ଏକ ବିରଳ ଗ୍ରହଣ ଅନୁଭୂତି

# ଆମେ ଭାଗ୍ୟବାନ

(୨୪ ଅକ୍ଟୋବର ୯୫ର ସୂର୍ଯ୍ୟ ପରାଗ ଉପଲକ୍ଷେ)

ଏଥିରେ ରହିଛି ......

- ଗ୍ରହଣର ବିଶେଷତା
- ଏକ ଗ୍ରହଣ ପ୍ରେମୀ ଗପ
- ଗ୍ରହଣର ମନୋରମ ଦୃଶ୍ୟ
- ଗ୍ରହଣ ସମ୍ପର୍କୀୟ ଛୋଟ ପରୀକ୍ଷା
- ଗ୍ରହଣ ଉପଭୋଗର ଏକ ନମୁନା

# ଆମେ ଭାଗ୍ୟବାନ

ଲେଖକ – ବିନୟ କୃଷ୍ଣ ପଟ୍ଟନାୟକ
ପ୍ରକାଶକ – ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
ମୁଦ୍ରଣ:- ସୁମନ ପ୍ରେସ୍, ଭୁବନେଶ୍ୱର-୬

ପ୍ରଥମ ପ୍ରକାଶନ – ମାର୍ଚ୍ଚ ୧୯୯୫
ମୂଲ୍ୟ – ଟ ୫.୦୦ (ପାଞ୍ଚ ଟଙ୍କା)

ଭାରତ ଜ୍ଞାନ ବିଜ୍ଞାନ ସମିତି, ଓଡ଼ିଶା
ଏ/୧୨ ଏଚ୍.ଆଇ.ଜି. ହାଉସିଂ ବୋଡ଼ କଲୋନୀ
ବରମୁଣ୍ଡା, ଭୁବନେଶ୍ୱର – ୭୫୧ ୦୦୩
ଫୋନ – ୪୭୦ ୮୯୧

# ବୁଲୁ ଗୁରୁଜୀ କହିଲେ...

ଗଣ୍ଡାଫୁଲ ଗାଁ ଇସ୍କୁଲ । ଛୋଟିଆ ଗାଁଟିର ଅଧିକାଂଶ ଘର ପିଲା ଏହି ଜାଗାଟିରେ ଏକାଠି ହୁଅନ୍ତି । ଇସ୍କୁଲଟିରେ ପାଞ୍ଚଜଣ ଶିକ୍ଷକ,ଶିକ୍ଷିକା । ଏମାନଙ୍କର ଭିତରେ ବୁଲୁ ଗୁରୁଜୀ ଆଉ ସୁମି ଗୁରୁମା' ପିଲାଙ୍କର ବଡ ପ୍ରିୟ। ଅନ୍ୟ ଶିକ୍ଷକମାନେ ଶ୍ରେଣୀରେ ଖାଲି ବହି ପଢାନ୍ତି, ମୁଖସ୍ଥ ନିଅନ୍ତି ।କିନ୍ତୁ ସୁମି ଗୁରୁମା' ପିଲାଙ୍କ ସହ କେତେ ଗପନ୍ତି, ଗୀତ ଗାଆନ୍ତି,ନାଚନ୍ତି ।ସେ ସିଲେଇ ବି ଜାଣନ୍ତି , ବୁଲୁ ଗୁରୁଜୀଙ୍କ ପାଖରେ ସ୍କୁଲଟା ଯାକର ଚଞ୍ଚଳିଆ ପିଲାଙ୍କର ଭିଡ ।କେତେବେଳେ ସେ ପିଲାଙ୍କୁ ବଗିଚ୍ଚାରେ ବୁଲାଉ ବୁଲାଉ



'ଜାତିଜାତିକା ଫୁଲ, ଫଳ,ଗଛ,ପୋକ,ପକ୍ଷୀ,ପଥର ଚିହ୍ନାଇଦିଅନ୍ତି ।କେତେବେଳେ' ସଁବାଳୁଆ ସବୁ ଆଣି ବୋତଲ କି ଡବାରେ ପୂରାଇ ପ୍ରଜାପତି ହେବା ଯାଏଁ ମଝିରେ ମଝିରେ ଦେଖାନ୍ତି ।କେତେବେଳେ ବେଙ୍ଗ ଅଣ୍ଡାରୁ ବେଙ୍ଗଫୁଲା ପୁଣି ବେଙ୍ଗ ହେବାର ମଜା ଦେଖାନ୍ତି ।କେବେ ପୁଣି ରାତିରେ ଖେଳପଡିଆରେ ପିଲାଙ୍କ ସହ ଶୋଇ କେତେ ରକମର ତାରା,ଗ୍ରହ ଆଦି ଚିହ୍ନାନ୍ତି । ପିଲାଙ୍କ ସାଥିରେ ସାଙ୍ଗ ପରି ସବୁବେଳେ ନୂଆ ନୂଆ କାମ କରୁଥାନ୍ତି ।ତାଙ୍କର ଛୋଟିଆ ଘରଟି ପିଲାଙ୍କର ଗୋଟିଏ ପରୀକ୍ଷାଗାର । ଶ୍ରେଣୀରେ ଶୁଖିଲା ବହିପଢା ଅପେକ୍ଷା ଦୁନିଆଁର ଖୋଲା ବହିକୁ ଓଲଟାଇବା ଉପରେ ହିଁ ସେ ସବୁବେଳେ ଲାଗିଥାନ୍ତି ।ଲାଗୁଥାଏ ଯେପରି ଛପନ ବର୍ଷର ଦରବୁଢା ମଣିଷଟା ପିଲାଙ୍କ ସହ ପିଲା ଉତ୍ସାହରେ ମାତିଛି । ଏହା ପିଲାଙ୍କୁ ବେଶ୍ ମତାଇ ଦିଏ ।

ଆଜି ଶ୍ରେଣୀରେ ବୁଲୁ ଗୁରୁଜୀ ଏକ ନୂଆକଥା କହିଲେ-"ଆମେ ବହୁତ ଭାଗ୍ୟବାନ୍" ।ଅକ୍ଟୋବର ୨୪ ତାରିଖ ଅର୍ଥାତ ଦୀପାବଳୀ ପରଦିନ ସକାଳେ

ଆମେ ଆକାଶରେ ଗୋଟିଏ ସୁନ୍ଦର ଦୃଶ୍ୟ ଦେଖି ପାରିବା । ତା ହେଉଛି ସୂର୍ଯ୍ୟ ପରାଗ । ସକାଳୁ ସକାଳୁ ହଠାତ୍ ସନ୍ଧ୍ୟା ହୋଇଯିବ । ପଶୁ ପକ୍ଷୀ ଗଛ ଲତା ଆଦି ସମସ୍ତେ ବିଚିତ୍ର ହାବ ଭାବ ଦେଖେଇବେ ଆମେମାନେ ସମସ୍ତେ ଏହା ଦେଖିବା ପାଇଁ ପ୍ରସ୍ତୁତ ହେବା । ସୂର୍ଯ୍ୟ ପରାଗର ମଜା ଦେଖିବା ସାଙ୍ଗକୁ ପରାଗ ବେଳେ ଆମ ଚାରିପଟେ କ'ଣ କ'ଣ ଘଟୁଛି ଦେଖିବା ଓ ବିଭିନ୍ନ ପରୀକ୍ଷା କରିବା ।"

"ମନେରଖ : ଅକ୍ଟୋବର ୨୪ ତାରିଖ ସକାଳର ସୂର୍ଯ୍ୟପରାଗ ଆମ ପାଇଁ ଏକ ବିଶେଷ ଘଟଣା ହେବ ।"

ବୁଲୁ ଗୁରୁଜୀଙ୍କଠାରୁ ନୂଆ ଖବରଟି ପାଇ ପିଲାଙ୍କ ମନ କୁଣ୍ଢେମୋଟ । ସୂର୍ଯ୍ୟପରାଗ ବିଷୟରେ ଶୁଣି ସେମାନେ ଯେତେ ମଜା ପାଇଥିଲେ ତା'ଠୁ ବେଶୀ ତାଙ୍କୁ ଛୁଇଁଥିଲା "ଆମେ ଭାଗ୍ୟବାନ", "ସକାଳେ ସନ୍ଧ୍ୟା", ଗ୍ରହଣ ସାଙ୍ଗକୁ ଆହୁରି କେତେ କ'ଣ ହେବ', "ଆମେ ସମସ୍ତେ ଦେଖିବା" ଏହି କଥାଗୁଡ଼ିକ ସାଙ୍ଗେ ସାଙ୍ଗେ ଖବରଟା କାନକୁ କାନ ଡେଇଁ ସ୍କୁଲ ସାରା ବ୍ୟାପିଗଲା ।



## ଘରର ପ୍ରତିକ୍ରିୟା...

ବୀଣା ଦେବୀ ଓ ସଚୀ ବାବୁଙ୍କ ପୁଅ ଝିଅ ମୁନ୍ନା ଓ ଲୀନା ବି ଏଇ ସ୍କୁଲରେ ପଢନ୍ତି । ସ୍କୁଲ ଛୁଟି ହେଉ ହେଉ ଘରେ ଚହଳ ପକାଇ ଦେଲେ । ଘରଟିରେ ବାପା ମା, ଦୁଇଛୁଆ ଆଉ ବୁଢୀ ମା' । ବୁଲୁ ଗୁରୁଜୀଙ୍କ କଥାଗୁଡ଼ିକୁ ଏକା ନିଃଶ୍ୱାସକେ କହି ଚାଲିଆନ୍ତି । ବାବା ମା' ପରସ୍ପର ମୁହଁକୁ ଚାହୁଁଆନ୍ତି, ପୁଣି ପିଲାଙ୍କୁ ଅନେଇ ଶୁଣୁଆନ୍ତି । ବୁଢୀ ମା' ଦୂରରୁ ହିଁ ଚିଲେଇ ଉଠିଲା "ନାଇଁ... ନାଇଁ, ତମେ କେହି ଜମା ଦେଖିବନି...ସେଦିନ ରାହୁ ରାକ୍ଷସ ସୂର୍ଯ୍ୟଙ୍କୁ

ଗିଳିଦେବ ... ଯିଏ ଘରୁ ପଦାକୁ ବାହାରିବ ତାକୁ ଗ୍ରହଣ ପାପ ଲାଗିବ ।"

"ସେ ରାହୁ,କେତୁ ଗପ କହି ଚ୍ୱଲିଲା , ଅସୁର ଦେବତା କଳିରୁ ସମୁଦ୍ର ମନ୍ଥନ ହେଲା । ସେଥିରୁ କେତେ କ'ଣ ବାହାରିଲା । ବିଷ,ସୁରଭି, ଲକ୍ଷ୍ମୀ, ପରେ ଅମୃତ ଏମିତି କେତେ କ'ଣ । ମାୟା କରି ବିଷ୍ଣୁ ଅସୁରଙ୍କଠୁ ଅମୃତ କଳସ ନେଇଯାଇ ଦେବତାଙ୍କୁ ବାଣ୍ଟିଦେଲେ । ରାହୁ ଅସୁର ଦେବତା ରୂପଧରି ଧାଡିରେ ବସି ଅମୃତ ପାଇ ଖାଇଦେଲା । ଚନ୍ଦ୍ର,ସୂର୍ଯ୍ୟ ଏହା ଜାଣି ବିଷ୍ଣୁଙ୍କୁ ଖବର ଦେଲେ । ରାହୁ ଅମୃତ ଗିଳିବା ଆଗରୁ ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ତା ମୁଣ୍ଡ କାଟିଦେଲେ । ତଥାପି ସେ ଅମର ହୋଇଗଲା । ତେଣୁ ସେ ସବୁବେଳେ ସୂର୍ଯ୍ୟ, ଚନ୍ଦ୍ରଙ୍କ ଉପରେ ପ୍ରତିଶୋଧ ନେଉଛି । ଗ୍ରହଣ ଦିନ ଗିଳି ପକାଉଛି ।"

ଏହା କହି ବୁଢୀମା କହିଲା "କେହି ପଦାକୁ ବାହାରିବନି । ଅଶୁଭ ହେବ,ରୋଗ ହେବ,ମରୁଡି/ବନ୍ୟା ହେବ" ଏମିତି କେତେ କଣ ସେ ଡରାଇ ଚ୍ୱଲିଲା ।

ମା' ବି ଏହି କଥାକୁ ଦୋହରାଇଲେ । ବାପା ଜାଣିଛନ୍ତି ଏ ସବୁ ମିଛ... ମନଗଢା, ଗପ ମାତ୍ର । କିନ୍ତୁ ଘରେ ଯେତେ ବୁଝାଇଲେ ବି ବୁଢୀ ମା' ନାରାଜ । ତେଣୁ କିଛି ନ କହି ଚୁପ୍ ରହିଲେ ।

ଲୀନା ଓ ମୁନାଙ୍କ ମୁହଁ ଶୁଖିଗଲା ।

## ଖବର ସନ୍ଧାନରେ...

ଏହା ଖାଲି ଲୀନା,ମୁନା ଘର କଥା ନ ଥିଲା । ଗାଁଟାଯାକର ଘରେ ସବୁ ପିଲାଙ୍କର ଏକା ଅନୁଭୂତି । ବୁଲୁ ଗୁରୁଜୀ ଜଣ ଜଣ କରି ସମସ୍ତଙ୍କ ଶୁଖିଲା ମୁହଁରୁ କଥା ଶୁଣି ମୁଣ୍ଡ ଟୁଙ୍ଗାରୁଥାନ୍ତି ଓ ମୁରୁକି ହସୁଥାନ୍ତି । କିଛି ପିଲା ଅଳି କରୁଥାନ୍ତି ଯେ 'ନାଇଁ ଗୁରୁଜୀ ; ଆମେ



ନିଶ୍ଚେ ଦେଖିବୁ' ।

ଗୁରୁଜୀ ଗୋଟିଏ ବାଟ ଖୋଜିଲେ । ପିଲାଙ୍କୁ କେତେଗୁଡ଼ିଏ ଠିକଣା ଦେଲେ ।ଏଥିରୁ ଅନେଗୁଡ଼ିଏ ଥିଲା ଆମେରିକା,ଇଂଲଣ୍ଡ, ଜର୍ମାନୀ, ଅଷ୍ଟ୍ରେଲିଆ, ଜାପାନ, ଚୀନ ଆଦି ବିଦେଶୀ ଛୁଆଙ୍କ ଠିକଣା । କେତେକ ଥିଲା ବିଭିନ୍ନ ଅନୁଷ୍ଠାନ ଯଥା ପ୍ଲାନେଟାରିଅମ, ଗବେଷଣା ଅନୁଷ୍ଠାନ, ପର୍ଯ୍ୟବେକ୍ଷଣ କେନ୍ଦ୍ର,କଲେଜ ଅଧ୍ୟାପକ ଇତ୍ୟାଦି । ପିଲାଏ ଚିଠି ଲେଖାରେ ଲାଗିଗଲେ । ବିଦେଶୀ ସାଥିଙ୍କୁ ପଚ୍ଚରିଲେ 'ତୁମେ ସୂର୍ଯ୍ୟପରାଗ ଦେଖିଛ କି ? ' ' ସେଦିନ କ'ଣ କ'ଣ କଲ ? କିପରି ଦେଖିଲ, ଆଉ କ'ଣ ଦେଖିଲ'' ।ଏମିତି କେତେ କ'ଣ ପ୍ରଶ୍ନ । ଅନ୍ୟମାନଙ୍କୁ ପଚ୍ଚରିଲେ ସତରେ ଗ୍ରହଣ କେମିତି ହୁଏ ? ରାହୁ କଣ ସୂର୍ଯ୍ୟଙ୍କୁ ସତରେ ଗିଳେ ? ଆମେ କିପରି ଦେଖିବୁ କିପରି ପରୀକ୍ଷା କରିବୁ ? ଇତ୍ୟାଦି ଇତ୍ୟାଦି ।

ଚିଠି ଗୁଡ଼ିକୁ ସଜାଇ ଠିକଣା ଲେଖି ପଠାଇ ଦିଆଗଲା । ଗୁରୁଜୀ ନିଜେ ମଧ୍ୟ କେତେକ ଚିଠି ଲେଖିଥାନ୍ତି ।



## ବିଶ୍ୱାସ ଓ ବିଧି

କ୍ରମେ ପିଲାଙ୍କ ପାଖକୁ ଚିଠିର ଉତ୍ତର ସବୁ ଆସିବାରେ ଲାଗିଲା । ବିଭିନ୍ନ ଗବେଷଣା ଅନୁଷ୍ଠାନ ଲେଖିଲେ ଯେ ଏହା ଏକ ବିରଳ ସୁଯୋଗ । ଆଗରୁ ଲୋକେ ଏହାକୁ ବୁଝି ପାରି ନ ଥିଲେ । ସେମାନେ ଭାବୁଥିଲେ ଯେ, ସୂର୍ଯ୍ୟ ଓ ଚନ୍ଦ୍ର ଲୁଚିଯାଉଛି ଅର୍ଥ ଏକ ବିଶାଳ ରାକ୍ଷସ ହିଁ ଏମାନଙ୍କୁ ଗିଳିଦେଉଥିବ । ତେଣୁ ସେହି ଭୟଙ୍କର ଅସୁର କବଳରୁ ଲୁଚିବା ପାଇଁ ଲୋକେ ଘରେ କବାଟ ଦେଇ ଲୁଚି ଯାଉଥିଲେ । ଦେଶ ବିଦେଶରେ କେତେ ବିଧି ବିଧାନ ପାଳନ କରାଯାଉଥିଲା । ଯଥା- ଭାରତରେ ଅଧିକାଂଶ ଲୋକ ଏହାକୁ ଏକ ଅଶୁଭ ସମୟ ଭାବି ଘରେ ରହନ୍ତି

। ଆଗୁଆ ଖିଆ, ଗାଧୁଆ, ଘରଧୂଆ, ପୂଜାପାଠ ଛଡା ଦାନଧର୍ମ ଆଦି ବି କରିଥାନ୍ତି ।

ମିଶର ଦେଶରେ ଗ୍ରହଣ ସମୟରେ ସୂର୍ଯ୍ୟବଂଶୀ ରାଜା ଫାରାଓ ଆକାଶରେ ସୂର୍ଯ୍ୟଙ୍କ ଅନୁପସ୍ଥିତିର ଭରଣା ପାଇଁ ମନ୍ଦିର ବେଢାରେ ବୁଲୁଥିଲେ ।ଚୀନଦେଶ ଲୋକେ ଏକ ଭୋକିଲା ଅସୁର ସୂର୍ଯ୍ୟକୁ ଗିଳିଦେଉଛି ଭାବି ତାକୁ ତଡିବା ପାଇଁ ପ୍ରବଳ ଶବ୍ଦ, ଚିତ୍କାର କରୁଥିଲେ । ଲୋହିତ ଭାରତୀୟ ଆଦିବାସୀମାନେ ଅସୁର କବଳରୁ ସୂର୍ଯ୍ୟଙ୍କୁ ମୁକୁଳାଇବା ପାଇଁ ପରାଗ ସମୟରେ ସୂର୍ଯ୍ୟଆଡକୁ ଶର ମାରୁଥିଲେ । ଏସ୍କିମୋମାନେ ରୋଗାକ୍ରାନ୍ତ ସୂର୍ଯ୍ୟର ପ୍ରଭାବରେ ତାଙ୍କୁ ରୋଗ ହୋଇଯିବ ଭାବି ନିଜ ପୂଜାପୀଠ ସାମନାରେ ସବୁ ବାସନକୁସନକୁ ଓଲଟାଇ ରଖିଥାନ୍ତି । ଏସବୁ ପଢି ପିଲାମାନେ ହସରେ ଫାଟି ପଡୁଥାନ୍ତି ।

ଏହାଛଡା ଇତିହାସରେ ଆହୁରି ଅନେକ ଉଦାହରଣ ରହିଛି । ଯଥା- ଗ୍ରହଣର ବୈଚିତ୍ର୍ୟ ଓ ଆକସ୍ମିକତାକୁ ଡରି ଗ୍ରୀସ ଦେଶରେ ଯୁଦ୍ଧ ବନ୍ଦ ହୋଇଯାଇଥିଲା । ଜାମାଇକାର ଆଦିବାସୀ ମାନେ ଡରି କଲମ୍ବସଙ୍କ ଅସମ୍ଭବ କଥାରେ ରାଜି ହୋଇଯାଇଥିଲେ, ଇତ୍ୟାଦି ।

ସେତେବେଳେ ସେମାନଙ୍କ ବୁଝାମଣାକୁ ଆଧାର କରି ଏପରି ପ୍ରତିକାର ବ୍ୟବସ୍ଥା କରିବା ଯୁକ୍ତିଯୁକ୍ତ ଥିଲା । କିନ୍ତୁ ଆଜି ପରାଗ ବିଷୟରେ ମଣିଷ ଠିକ୍ ଭାବେ ଜାଣିସାରିଲାଣି । ସେଥିପାଇଁ ସେ ଆଜି ଆଉ ଲୁଚିବା ପରିବର୍ତ୍ତେ ପରାଗକୁ ସ୍ୱାଗତ କରୁଛି, ବିଭିନ୍ନ ଉପାୟରେ ତାକୁ ଦେଖୁଛି । ଜୀବଜଗତ ଉପରେ ପରାଗ ପ୍ରଭାବକୁ ଦେଖୁଛି । ପରାଗ ସମୟରେ ନୂଆ ନୂଆ ପରୀକ୍ଷା କରି ସୂର୍ଯ୍ୟର ରୂପକୁ ଅଧିକ ସ୍ପଷ୍ଟଭାବେ ବୁଝିପାରୁଛି ।

ତଥାପି ଭାରତ ପରି ଏକ ଦେଶରେ ଗ୍ରହଣର କାରଣ ଲୋକେ ଜାଣିଥିଲେ ବି ଲୋକେ ଅନ୍ଧ ଭଳି ଆଗର ବିଶ୍ୱାସକୁ ହିଁ ମାନୁଛନ୍ତି ।ଏଥିପାଇଁ ଘରେ କେତେ ବିଧିବିଧାନ ପାଳି ଲୁଚୁଛନ୍ତି । ତେଣୁ ଲୋକଙ୍କ ମନରେ ଆଗ୍ରହ ସୃଷ୍ଟି କରି ଏହି ବିରଳ ଘଟଣାଟିକୁ ସ୍ୱାଗତ କରିବା ଓ ଉପଭୋଗ କରିବା ପାଇଁ ଏହା ଆମ ପାଇଁ ଏକ ଆହ୍ୱାନ ।

ଏପରି ବର୍ଣ୍ଣନା ସହିତ ବିଭିନ୍ନ ସ୍ଥାନରୁ ଗତ ପରାଗଗୁଡିକର କେତେ

ରକମର ଫଟୋ ବି ଆସିଲା । ପରାଗର ବିଭିନ୍ନ ଅବସ୍ଥାରେ ସୂର୍ଯ୍ୟ ନୂଆ ନୂଆ ରୂପ ଧରିଥାଏ । କେଉଁଠି ଜହ୍ନ ଭଳି ଖଣ୍ଡିଆ ଦିଶୁଥାଏ, କେଉଁଠି ପୂରା ଲୁଚି ଯାଇଥାଏ । କେତେବେଳେ ହୀରାମୁଦି ଭଳି ସୂର୍ଯ୍ୟର ଧାର ଝଲସୁଥାଏ, କେଉଁଥିରେ ସୂର୍ଯ୍ୟ ଘେରିପାଖରେ ଆଲୁଅଟା ପାଖୁଡା ପରି ଖୋଲିଯାଇଥାଏ, କେଉଁଠି ସୂର୍ଯ୍ୟଟା ପୂରା ଢାଙ୍କି ହୋଇଯାଇଥାଏ, କେଉଁଠି ଧାଡିଏ ମାଳି ପରି ଆଲୁଅ ସୂର୍ଯ୍ୟ ଧାରରୁ ମୁଣ୍ଡ ଟେକିଥାଏ ଏମିତି କେତେ ରକମର ଚିତ୍ର ।

ପିଲାଙ୍କ ମନ ଆନନ୍ଦ ଓ କୌତୂହଳରେ କୁରୁଳି ଉଠୁଥାଏ । ପ୍ରତିଦିନ ନିଜ ନିଜ ଚିଠି ନେଇ ସ୍କୁଲରେ ପହଞ୍ଚୁଥାନ୍ତି । ତାକୁ ଘେରିଯାଇ ସମସ୍ତେ ଆନନ୍ଦରେ ଚିତ୍କାର କରିଉଠନ୍ତି । ଫଟୋଗୁଡାକ ହାତକୁ ହାତ ହେଇ ଫେରିଲା ବେଳକୁ ଆଣିଥିବା ପିଲାଟି ଅପେକ୍ଷା କରି କରି ହନ୍ତସନ୍ତ ହୋଇପଡୁଥାଏ । ଗୁରୁଜୀ ସବୁ ଦେଖି ପିଲାଙ୍କୁ ବୁଝାଇ ଦେଉଥାନ୍ତି ;ଆଉ ତାଙ୍କ ଆନନ୍ଦ ବେଳେ ମୁରୁକି ମୁରୁକି ହସୁଥାନ୍ତି ।

ପିଲାଙ୍କର ମଜା ଆହୁରି ବଢିଗଲା ଯେବେ ବିଦେଶୀ ସାଙ୍ଗଙ୍କଠୁ ଏପରି ଚିଠି ଆସିଲା । "ଆରେ, ତାଙ୍କର ସୂର୍ଯ୍ୟ ପରାଗ ବେଳର ରୀତି ନୀତି କେତେ ଅଲଗା ! ସେମାନେ ଦଳ ଦଳ ହୋଇ ପରାଗକୁ ସ୍ୱାଗତ କରନ୍ତି, ଗୀତ ଗାଇ, ନାଚି ମଉଜ କରନ୍ତି, ସୂର୍ଯ୍ୟ ଚଷମା ପିନ୍ଧି ଏହି ମନୋରମ ଦୃଶ୍ୟକୁ ଆନନ୍ଦରେ ପିଇ ଯାଆନ୍ତି । କିଏ କେତେ ରକମରପରୀକ୍ଷା କରନ୍ତି ।"

ଏସବୁ ପଢି ପଢି ପିଲାଙ୍କ ମନ ଆଗଠୁ କେତେ ବଦଳି ଗଲାଣି, ସେମାନେ ଯେମିତି ହେଲେ ବି ଏଥର ଗ୍ରହଣଟି ଦେଖିବେ । କିନ୍ତୁ ଘରର କଟକଣା ମନେ ପଡିଗଲା କ୍ଷଣି ମୁହଁଟା ମଉଳା ଫୁଲ ପରି ଝାଉଁଳି ପଡୁଥାଏ । ଭିତରେ ସମସ୍ତେ ବୁଲୁ ଗୁରୁଜୀଙ୍କ ଉତ୍ସାହକୁ ମନେ ପକାଇ ଅଣ୍ଟାକୁ ଭିଡି ଆଆନ୍ତି । ଦେଖାଯାଉ



କ'ଣ ହେଉଛି ।

## ପନ୍ଦର ଦିନ ଆଗରୁ

ସୂର୍ଯ୍ୟ ପରାଗକୁ ଆଉ ୧୫ଦିନ ବାକି ଅଛି । ଆଜି ସ୍କୁଲରେ ପିଲାଏ ଏକାଠି ହେବା ପରେ ଗୁରୁଜୀ କହିଲେ ଆଜି ଉପରବେଳା ଜଣେ ବୈଜ୍ଞାନିକ ଆମ ସ୍କୁଲକୁ ଆସିବେ । ସେ ପରାଗ ବିଷୟରେ ବୁଝାଇବେ । ତୁମେ ଯିଏ ଯାହା ବୁଝିବାକୁ ଚାହିଁବ ତାଙ୍କୁ ପଚାରି ପାରିବ ।



ଯେତେବେଳକୁ ବୁଲୁ ଗୁରୁଜୀଙ୍କ କଥାରେ ପିଲାମାନେ ମାତିଯାଇଥାନ୍ତି । କିନ୍ତୁ ତେଣେ ଘରେ ସମସ୍ତଙ୍କ କଟକଣା ବଢି ଚାଲିଥାଏ । ଘରର କଥାଗୁଡିକୁ ଯୁକ୍ତି ବା ପ୍ରମାଣ ଦ୍ୱାରା କାଟିବା ପାଇଁ ତାଙ୍କ ପାଖରେ କିଛି ସିଧା ଉତ୍ତର ବି ନ ଥାଏ । ତେଣୁ ସେମାନେ ଘରେ କେବଳ ଚୁପ ରହୁଥାନ୍ତି । ଆଜି ତାଙ୍କୁ ଏକ ସୁଯୋଗ ମିଳିବ ତାଙ୍କ ମନର ଅସଂଖ୍ୟ ପ୍ରଶ୍ନ ଆଲୋଚନା କରି ଉତ୍ତର ପାଇବା ପାଇଁ ।

ଚାରିଟା ବେଳକୁ ଯୁବ ବୈଜ୍ଞାନିକ ମୋହନ ବାବୁ ସ୍କୁଲରେ ପହଞ୍ଚିଗଲେ । ସେ ବିଶ୍ୱବିଦ୍ୟାଳୟରେ ଆକାଶ ବିଜ୍ଞାନ ପଢାନ୍ତି । ଜଣେ ଆକାଶପ୍ରେମୀଭାବେ ଏଥରର ସୂର୍ଯ୍ୟ ପରାଗଟି ଉପରେ ତାଙ୍କର ବିଶେଷ ଆଗ୍ରହ । ସେ ଏ ସମ୍ପର୍କରେ ଯଥେଷ୍ଟ ତଥ୍ୟ ସଂଗ୍ରହ କରି ଲେଖାଲେଖି କରିବା ସାଙ୍ଗକୁ ବିଭିନ୍ନ ଅନୁଷ୍ଠାନରେ ଏ ସମ୍ପର୍କରେ ବୁଝାଉଥାନ୍ତି । ବୁଲୁ ଗୁରୁଜୀଙ୍କର ସେ ଜଣେ ପୁରୁଣା ଛାତ୍ର । ଗୁରୁଜୀଙ୍କ କଥାରେ ସେ ଆଜି ପିଲାଙ୍କୁ ଏ ବିଷୟରେ କହିବାକୁ ଆସିଛନ୍ତି । ଆରମ୍ଭ କଲେ ରାତି ଆକାଶରୁ କିଏ କେତେ ରକମର ତାରା ଚିହ୍ନୁଛି ? ଗୁରୁଜୀଙ୍କ ସହ ପିଲାଏ ମଝିରେ ମଝିରେ ତାରା ଦେଖନ୍ତି । ଗୋଟି ଗୋଟି କରି

ସବୁ ମୁଖ୍ୟ ତାରା ଓ ତାରମଣ୍ଡଳ ବିଷୟରେ କହି ଗ୍ଭଲିଲେ । ପିଲାଙ୍କର ରୁଚି,ଅଭ୍ୟାସ ଓ ଆଗ୍ରହ ଯୋଗୁଁ ମୋହନବାବୁଙ୍କୁ ଭାରି ଖୁସି ଲାଗିଲା । ସେ ଅଧିକ ଉତ୍ସାହରେ ଆଲୋଚନାକୁ ଆଗେଇଲେ ।

## ପରାଗର କାରଣ



ଆକାଶରେ କେତେ ଜାତିର ପିଣ୍ଡ ଏଣେତେଣେ ଗତିକରୁ ଥାନ୍ତି । ପୃଥିବୀରୁ ଦେଖୁଥିବା ଲୋକଟିଏ ବେଳେବେଳେ ଏମାନେ ପରସ୍ପରକୁ ଟପି ଯାଉଥିବାର ଦେଖେ । ଆକାଶର ଦୁଇଟି ପିଣ୍ଡ ଆଗପଛ ହୋଇ ଦିଶିଥାଏ । ଏଥିରୁ ତିନୋଟି ମୁଖ୍ୟ ଘଟଣା ଘଟେ ।

(କ) ସମାବରଣ ବା ଅକଲ୍ଟେସନ :ଗୋଟିଏ ବଡ ପିଣ୍ଡ ପଛପଟେ ସାନ ବସ୍ତୁଟିଏ ରହି ଦେଖାଯାଏ ନାହିଁ ।

(ଖ) ସଞ୍ଚାର ବା ଟ୍ରାଞ୍ଜିଟ : ବଡ ବସ୍ତୁ ଆଗ ଦେଇ ଛୋଟ ବସ୍ତୁଟିଏ ଆଗକୁ ବଢେ ।

(ଗ) ଗ୍ରହଣ : ପୃଥିବୀ ସହ ଚନ୍ଦ୍ର ଓ ସୂର୍ଯ୍ୟ ଏକ ସରଳରେଖାରେ ରହିଲେ ଗ୍ରହଣ ବା ପରାଗ ହୋଇଥାଏ । ପୃଥିବୀର ଆକାଶରେ ସୂର୍ଯ୍ୟ ଓ ଚନ୍ଦ୍ର ସବୁଠୁ ବଡ ଓ ଗୁରୁତ୍ୱପୂର୍ଣ୍ଣ ପିଣ୍ଡ । ସୂର୍ଯ୍ୟର ବ୍ୟାସାର୍ଦ୍ଧ ଚନ୍ଦ୍ରଠାରୁ ଆକାରରେ ୪୦୦ ଗୁଣ ବଡ । କିନ୍ତୁ ସୂର୍ଯ୍ୟ ପୃଥିବୀଠାରୁ ଚନ୍ଦ୍ର ଅପେକ୍ଷା ପ୍ରାୟ ୪୦୦ ଗୁଣ ଅଧିକ ଦୂରରେ ରହିଛି । ତେଣୁ ଦୁହେଁ ଆମ ଆକାଶରେ ପ୍ରାୟ ଏକା ଆକାରର ଜଣାପଡନ୍ତି । ସୂର୍ଯ୍ୟ ଗ୍ଭରିପଟେ ପୃଥିବୀ ଓ ପୃଥିବୀ ଗ୍ଭରିପଟେ ଚନ୍ଦ୍ର ଘୂରି ଗ୍ଭଲିଥାନ୍ତି । ବେଳେବେଳେ ତିନିହେଁ ଗୋଟିଏ ସମତଳରେ ଏକ ସରଳରେଖାରେ ରହିଯାନ୍ତି । ସୂର୍ଯ୍ୟ ଓ ପୃଥିବୀ ମଝିରେ ଚନ୍ଦ୍ର ଥିଲେ ପୃଥିବୀରେ ସୂର୍ଯ୍ୟ ପରାଗ ହୋଇଥାଏ ଓ ସୂର୍ଯ୍ୟ,ଚନ୍ଦ୍ର ମଝିରେ ପୃଥିବୀ

ରହିଗଲେ ପୃଥିବୀରେ ଚନ୍ଦ୍ର ଗ୍ରହଣ ହୋଇଥାଏ ।

ସାଧାରଣତଃ ପୃଥିବୀରେ କେତେକ ଅମାବାସ୍ୟା ଦିନ ସୂର୍ଯ୍ୟ ପରାଗ ଓ କେତେକ ପୂର୍ଣ୍ଣିମା ଦିନ ଚନ୍ଦ୍ର ଗ୍ରହଣ ହୋଇଥାଏ । କିନ୍ତୁ ପ୍ରତି ଅମାବାସ୍ୟା ବା ପୂର୍ଣ୍ଣିମାଦିନ ଏପରି ଗ୍ରହଣ ହୋଇ ନ ଥାଏ । ସେପରି ପ୍ରତି ଅମାବାସ୍ୟା ଓ ପୂର୍ଣ୍ଣିମାରେ ଗ୍ରହଣ ହେଉଥିଲେ ଏହା ଆମ ପାଇଁ ଏତେ ବିଶେଷ ହୋଇପାରି ନ ଥାନ୍ତା । ପ୍ରକୃତରେ ପୃଥିବୀର କକ୍ଷପଥ ତଳ ଓ ଚନ୍ଦ୍ରର କକ୍ଷପଥ ତଳ ଏକ ସମତଳରେ ନାହାନ୍ତି । ଦୁହେଁ ପରସ୍ପର ପ୍ରତି ୫ ଡିଗ୍ରୀ କୋଣ କରିଥାନ୍ତି । ତେଣୁ କେତେକ ନିର୍ଦ୍ଦିଷ୍ଟ ଅବସ୍ଥାରେ ହିଁ ଗ୍ରହଣ ପାଇଁ ଏକ ଅନୁକୂଳ ପରିସ୍ଥିତି ସୃଷ୍ଟି ହୁଏ ।

ସାଧାରଣତଃ ଆମେ ତିନିରକମର ସୂର୍ଯ୍ୟ ପରାଗ ଦେଖିଥିବା

(କ) ପୂର୍ଣ୍ଣ ସୂର୍ଯ୍ୟ ପରାଗ

(ଖ) ଆଂଶିକ ସୂର୍ଯ୍ୟ ପରାଗ,

(ଗ) ବଳୟ ସୂର୍ଯ୍ୟ ପରାଗ

ଚନ୍ଦ୍ର ଉପରେ ସୂର୍ଯ୍ୟର ଆଲୁଅ ପଡିଲେ ଏହାର ଛାଇଟି ଶଙ୍କୁ ପରି ଆକାରରେ ସୂର୍ଯ୍ୟର ବିପରୀତ ପଟକୁ ଲମ୍ବି ଯାଏ । ଏହି ଛାଇର ଭିତର ପାଖଟି ଗାଢ ଅନ୍ଧାର ହୁଏ, ଯାହାକୁ ପ୍ରଚ୍ଛାୟା କୁହାଯାଏ । ତାର ଚାରିକଡରେ ଫିକା ଅନ୍ଧାରୁଆ ଛାଇ ବି ଲମ୍ବିଥାଏ । ଏହାକୁ ଉପଛାୟା କୁହାଯାଏ । ପୃଥିବୀ ଆଡକୁ ଲମ୍ବିଥିବା ଏହି ଛାଇର ଅବସ୍ଥା ଅନୁସାରେ ଗ୍ରହଣଟିର ରୂପ ନିର୍ଭରକରେ ।

**(କ) ପୂର୍ଣ୍ଣ ସୂର୍ଯ୍ୟ ପରାଗ :** ଚନ୍ଦ୍ରର ପ୍ରଚ୍ଛାୟା ପୃଥିବୀର କୌଣସି ଅଞ୍ଚଳ ଉପର ଦେଇ ଗତିକଲେ ସେହି ଅଞ୍ଚଳରୁ କିଛି ସମୟ ପାଇଁ ସୂର୍ଯ୍ୟ ପୂରା ଅଦୃଶ୍ୟ ହୋଇଯାଏ । ଏହାକୁ ପୂର୍ଣ୍ଣ ପରାଗ କୁହାଯାଇଥାଏ । କିନ୍ତୁ ଏହାର ସର୍ବାଧିକ ସମୟ ସୀମା ସାଢେ ସାତମିନିଟ । ପୃଥିବୀ ଉପରେ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ ପ୍ରାୟ ପ୍ରତି ତିନି ଶତକରେ ଥରେ ଏପରି ଏକ ପୂର୍ଣ୍ଣ ପରାଗ ଦେଖାଦେଇଥାଏ । ଏହା ଏକ ଅତି ବିରଳ ଦୃଶ୍ୟ । ତେଣୁ ଏହାର ଆକର୍ଷଣ ବେଶି ଓଡିଶାକୁ ଫେବୃଆରୀ ୧୬, ୧୯୮୦ ମସିହାରେ ଏପରି ଏକ ପରାଗ ଦିଶିଥିଲା ।

(ଖ) **ଆଂଶିକ ସୂର୍ଯ୍ୟପରାଗ :** ଯେଉଁ ଅଞ୍ଚଳରେ ଚନ୍ଦ୍ରର ପ୍ରଚ୍ଛାୟା ପହଞ୍ଚିପାରେନାହିଁ ଓ କେବଳ ଉପଚ୍ଛାୟାଟି ହିଁ ପଡେ। ସେଠାକୁ ସୂର୍ଯ୍ୟ ପରାଗ ଆଂଶିକ ହୋଇଥାଏ । ସୂର୍ଯ୍ୟର କିଛି ଅଂଶ ଘୋଡାଇ ହୋଇଯାଏ । ପୃଥିବୀ ଉପରେ କୌଣସି ଜାଗାରୁ ପୂର୍ଣ୍ଣ ପରାଗ ଦେଖାଯାଉଥିଲେ । ଏହାର ଚାରିପଟକୁ ଉପଚ୍ଛାୟା ବ୍ୟାପିଥାଏ ଓ ସେଠାରୁ ଏକା ପରାଗର କିଛି ଅଂଶ (ଆଂଶିକ) ଦେଖିହୁଏ । ବେଳେବେଳେ ପୃଥିବୀ ଉପରେ ପ୍ରଚ୍ଛାୟା ପଡି ନ ପାରି କେବଳ ଉପଚ୍ଛାୟା ହିଁ ପଡିଥାଏ । ସେତେବେଳେ ପୂର୍ଣ୍ଣ ପରାଗ ଦେଖା ନ ଯାଇ କେବଳ ଆଂଶିକ ପରାଗ ହିଁ ଦେଖାଯାଇଥାଏ ।

(ଗ) **ବଳୟ ସୂର୍ଯ୍ୟ ଗ୍ରହଣ :** ଏହା ବି ଏକ ବିରଳ ଘଟଣା । ପୃଥିବୀ ଚାରିପଟେ ଘୂରିଲା ବେଳେ ଚନ୍ଦ୍ର ସବୁବେଳେ ଏକା ଦୂରତାରେ ନ ଥାଏ । ବେଳେବେଳେ ଦୂରକୁ ଥାଏ । ସେହି ଅବସ୍ଥାରେ ପୂର୍ଣ୍ଣ ସୂର୍ଯ୍ୟଗ୍ରହଣ ଘଟିଲେ ଚନ୍ଦ୍ରର ପ୍ରଚ୍ଛାୟାଟି ପୃଥିବୀ ଆଡକୁ ଆସିଲେ ବି ପୃଥିବୀକୁ ଛୁଇଁପାରେ ନାହିଁ । କେବଳ ପ୍ରଚ୍ଛାୟା ର ଓଲଟା ଛାଇଟି ହିଁ ପହଞ୍ଚିପାରେ । ଏହି ପରିସ୍ଥିତିରେ ମଝି ଅଞ୍ଚଳରୁ ସୂର୍ଯ୍ୟର ମଝିଅଂଶ ଅପେକ୍ଷାକୃତ ଭାବେ ଛୋଟିଆ ଦିଶୁଥିବା ଚନ୍ଦ୍ର ଦ୍ୱାରା ଆଡୁଆଳ ହୋଇଯାଏ । କିନ୍ତୁ ଏହାର ବାହାର ଧାର ଅଂଶ ଗୋଟିଏ ଗୋଲକ ମୁଦି ପରି ଉଜ୍ଜ୍ୱଳ ଦେଖାଯାଏ । ଏହାକୁ ବଳୟ ସୂର୍ଯ୍ୟ ପରାଗ କୁହାଯାଇଥାଏ । ଓଡିଶାରେ ଗତ ପଚାଶ ଷାଠିଏ ବର୍ଷ ମଧ୍ୟରେ ଏପରି କୌଣସି ବଳୟ ସୂର୍ଯ୍ୟ ପରାଗ ହୋଇ ଥିବାର ନଜିର ନାହିଁ ।

## ପରାଗ କେତେଥର ହୁଏ ?

ପିଲାଙ୍କ ପାଇଁ ମୋହନ ଭାଇଙ୍କ ବୁଝାଇବା ଢଙ୍ଗ ସହଜ ଓ ମଜାଳିଆ ଲାଗୁଥାଏ । ସମସ୍ତେ ମନ ଦେଇ ଶୁଣୁଥାନ୍ତି । ଏ ସମୟରେ ଶନୁ ମନକୁ ପ୍ରଶ୍ନଟିଏ ଆସିଲା । ସେ ପଚାରିଲା “ଭାଇ ସୂର୍ଯ୍ୟ ପରାଗ ବେଶୀ ହୁଏ ନା ଚନ୍ଦ୍ର ଗ୍ରହଣ ବେଶୀ ? ମୋହନ ଭାଇ ବୁଝାଇ ଦେଲେ -“ହଁ । ଆମକୁ ଲାଗେ ଯେ ବର୍ଷକ ଭିତରେ ଚନ୍ଦ୍ର ପରାଗ ଅଧିକା ହୁଏ । କିନ୍ତୁ ପ୍ରକୃତରେ ଅଧିକାଂଶ ବର୍ଷରେ ଦୁଇଟି ଚନ୍ଦ୍ରଗ୍ରହଣ ହୋଇଥାଏ । ବେଳେ ବେଳେ ଗୋଟିଏ, ତିନୋଟି ବା ଜମା

ବି ହୁଏ ନାହିଁ । ସୂର୍ଯ୍ୟ ପରାଗ ୨ରୁ ପାଞ୍ଚଥର ହୋଇଥାଏ । ଅବଶ୍ୟ ବର୍ଷରେ ପାଞ୍ଚଥର ହେବା ଏକ ଅସ୍ୱାଭାବିକ ଘଟଣା । କେବଳ ୧୯୩୫ ମସିହାରେ ୫ଟି ସୂର୍ଯ୍ୟ ପରାଗ ହୋଇଥିଲା ଓ ଆଗକୁ ୨୨୦୬ ରେ ପୁଣି ଏପରି ହେବ । ଗୋଟିଏ ଶତକରେ ପୃଥିବୀ ଉପରେ ହାରାହାରି ୬୬ଟି ପୂର୍ଣ୍ଣ ସୂର୍ଯ୍ୟ ଗ୍ରହଣ ଦେଖିବାକୁ ମିଳିଥାଏ ।

## ଆମ ଆକାଶରେ ସୂର୍ଯ୍ୟ ପରାଗ

ପୃଥିବୀ ଉପରେ ଯେ କୌଣସି ଜାଗାରେ ୩ରୁ ୪ ଶତକରେ ଜଣେ ଗୋଟିଏ ପୂର୍ଣ୍ଣ ସୂର୍ଯ୍ୟ ପରାଗ ଦେଖିପାରିବ । କିନ୍ତୁ ଆମେ ବହୁତ ଭାଗ୍ୟବାନ ଯେ, ବିଂଶ ଶତାବ୍ଦୀର ଗତ ଦୁଇ ଦଶକରେ ଭାରତରେ ୩ଟି ପୂର୍ଣ୍ଣ ସୂର୍ଯ୍ୟପରାଗର ସୁଯୋଗ ମିଳୁଛି । ଏଥିରୁ ଗୋଟିଏ ଆମେ ଆସନ୍ତା ଦୀପାବଳୀ ଅମାବାସ୍ୟା ପରଦିନ ସକାଳେ ଦେଖିବାକୁ ପାଇବା । ଗୋଟିଏ ଆଗରୁ ଫେବୃଆରୀ ୧୬,୧୯୮୦ ମସିହାରେ ହୋଇଥିଲା ଏବଂ ଆରଟି ୧୯୯୯ ମସିହା ମସିହା ଅଗଷ୍ଟ ୧୧ ତାରିଖରେ ଦେଖିବାକୁ ମିଳିବ । କିନ୍ତୁ ୧୯୯୯ ମସିହାର ପରାଗଟି ବର୍ଷା ଋତୁ ବେଳେ ହେବାକୁ ଥିବାରୁ ଆକାଶ ସଫା ରହିବାର ଆଶା କମ । ତେଣୁ ଏଥରର ସୂର୍ଯ୍ୟପରାଗଟିର ଗୁରୁତ୍ୱ ଆମ ପାଇଁ ବେଶୀ ।

କିନ୍ତୁ ଏହି ସୂର୍ଯ୍ୟ ପରାଗଟି ଓଡିଶାରେ ଆମ ପାଇଁ ଆଂଶିକ ହେବ । କେବଳ ରାଜସ୍ଥାନ, ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ, ବିହାର ଓ ପଶ୍ଚିମବଙ୍ଗର କେତେକ ସ୍ଥାନପାଇଁ ଏହା ଏକ ପୂର୍ଣ୍ଣ ପରାଗ ହେବ । ଓଡିଶାରୁ ଦେଖିଲେ ସୂର୍ଯ୍ୟର ପାଖାପାଖି ୯୦ ପ୍ରତିଶତ ଭାଗ ଦେଖାଯିବ ନାହିଁ । ତେଣୁ ଏହା ଏକ ସୁନ୍ଦର ଦୃଶ୍ୟ ସୃଷ୍ଟି କରିବ । ଏହା ଆମ ପାଇଁ ଏକ ବିରଳ ସୁଯୋଗ ।

ଏପରି କହି ମୋହନ ଭାଇ ପୃଥିବୀର ବିଭିନ୍ନ ସ୍ଥାନରୁ ଗ୍ରହଣ ବେଳେ ଉଠାଯାଇଥିବା ବଡ ବଡ ଫଟୋ ସବୁ ଦେଖାଇବାକୁ ଲାଗିଲେ । ଚମତ୍କାର ଫଟୋଗୁଡିକୁ ଦେଖି ପିଲାଙ୍କ ସ୍ୱପ୍ନ ଓ ଆକାଂକ୍ଷା ତୀବ୍ର ବେଗରେ ବଢି ଚାଲିଥାଏ ।

# ଏଥର ସ୍କୁଲରେ ଦେଖିବା

ଲୀନା ଆଉ ସମ୍ଭାଳି ପାରିଲାନି । ଘରର କଟକଣା ମନେ ପକାଇ ଦେଇ କହିପକାଇଲା : "ମୋହନ ଭାଇ, ଦେଖନ୍ତୁ । ଗୁରୁଜୀ ଓ ଆପଣ କହିବା ପରେ ଏବଂ ଦେଶ ବିଦେଶରୁ ବିଭିନ୍ନ ଚିଠି ପାଇଲା ପରେ ସୂର୍ଯ୍ୟ ପରାଗ ଆମ ପାଇଁ ଅତି ଆକର୍ଷଣୀୟ ହୋଇପଡ଼ିଛି। କିନ୍ତୁ ଆପଣ, ଗୁରୁଜୀ ଏମିତି ଖୁବ୍ କମ୍ ଲୋକଙ୍କୁ ଛାଡ଼ିଦେଲେ (ଏ ସମୟରେ ସୁମି ଗୁରୁମା ପଛରୁ କହି ପକାଇଲେ "ମୁଁ ବି ତୁମ ସାଙ୍ଗରେ ଅଛିରେ ଲୀନା।" ପିଲାଏ ଖୁସିରେ ପାଟିକରି ତାଳି ମାରିଲେ ।) ଲୀନା ଅଟକିଯାଇଥିଲା ।ପୁଣି ଆଗେଇ କହିଲା, ହଁ ମୋହନ ଭାଇ ଆପଣ କେତେଜଣଙ୍କୁ ଛାଡ଼ିଦେଲେ ଏଥିପାଇଁ ଆମକୁ କେହି ବି ହଁ କହୁ ନାହାନ୍ତି । କହୁଛନ୍ତି ସୂର୍ଯ୍ୟ ପରାଗ ବେଳେ ସମସ୍ତେ ଘରେ ରହିବ । ବାହାରକୁ ବାହାରିବା ମନା । ଯେତେ କହିଲେ ବି କେହି ଶୁଣୁନାହାନ୍ତି । ଗୁରୁଜୀ କହିବା ପରଠୁ ଆମେ ସବୁଦିନ ଘରେ କହି ଚାଲିଛୁ । କିନ୍ତୁ ଏଥର ଗାଳି ଖାଉଛୁ । ଆମେ କଣ କରିବୁ କହିଲେ ?"

ଏଥର ଜଣେ ପରେ ଜଣେ ଉଠି ତାଙ୍କଘରର କଟକଣା ବିଷୟରେ କହିଚାଲିଲେ । ହୋ ହଲ୍ଲା ଆରମ୍ଭ ହୋଇଗଲା ।

ମୋହନ ଭାଇ ସମସ୍ତଙ୍କ କଥା ଶୁଣିଲେ । ଏଥର କହିଲେ, ଏହି କଟକଣା ଖାଲି ତୁମମାନଙ୍କ ଘରକଥା ନୁହେଁ । ଏହା ଭାରତସାରା କଥା । ଗତ ୧୯୮୦ ମସିହାର ଗ୍ରହଣରେ ସେ ବର୍ଣ୍ଣନା କଲେ । ସେତେବେଳେ ସମସ୍ତଙ୍କ ଘରର ତାଟି କବାଟ ପଡ଼ିଯାଇଥାଏ । ଏପରିକି ଯେଉଁମାନେ ଗ୍ରହଣ ବିଷୟରେ ପଢ଼ାନ୍ତି ଓ ଜାଣନ୍ତି ସେମାନେ ମଧ୍ୟ ଲୁଚିଥିଲେ । ଦେଶର ଅଧିକାଂଶ ଗବେଷଣା ଅନୁଷ୍ଠାନ ଓ ବୈଜ୍ଞାନିକ ମାନେ ମଧ୍ୟ ଗ୍ରହଣର ପୁରୁଣା ବିଧି ପାଳି ବନ୍ଦ ପାଳିଲେ । ଏହା ସ୍ୱାଭାବିକ କଥା । କିନ୍ତୁ ତୁମେ ଟିକି ବିଜ୍ଞାନୀମାନେ ହିଁ ଅସଲ ବିଜ୍ଞାନୀ । ଏଥର ତୁମେମାନେ ନିଶ୍ଚୟ ଦେଖିବ । ଆମ ସାଥିରେ ମୋର ଓ ତୁମର ବୁଲୁ ଗୁରୁଜୀ ଅଛନ୍ତି । ଏଥର ତୁମେମାନେ ସ୍କୁଲରେ ଏକାଠି ହୋଇ ପରାଗ ଦେଖି ପାରିବ । ଏପରି କହି ସେ ବୁଲୁ ଗୁରୁଜୀଙ୍କ ଆଡ଼କୁ ଚାହିଁଲେ । ଗୁରୁଜୀ ମୁରୁକି ହସି ମୁଣ୍ଡ ଟୁଙ୍ଗାରିଲେ ।

ଏ କଥା ଦେଖି ପିଲା ଖୁବ୍ ଖୁସିରେ ଚିତ୍କାର କରି ତାଳି ମାରିଲେ । ସମସ୍ତେ କହିଗଲିଲେ, " ମୁଁ ଆସିବି " " ମୁଁ ଆସିବି" " ମୁଁ ଆସିବି" ... ।

## ସୂର୍ଯ୍ୟ ପରାଗ ବେଳେ କ'ଣ କ'ଣ ହୁଏ ?

ମୋହନ ଭାଇ ହସୁ ହସୁ କହିଲେ " ଆଛା ଶୁଣ ପରାଗ ହଉଛି ବୋଲି ତ ଶୁଣିଲ । କିନ୍ତୁ ସୂର୍ଯ୍ୟ ପରାଗ ବେଳେ କ'ଣ କ'ଣ ହୁଏ ତମେ ଜାଣିଛ ?

ସମସ୍ତେ କହିଲେ 'ନା,ନା, ଆମେ ତ କେବେ ବି ସୂର୍ଯ୍ୟ ପରାଗ ଦେଖି ନାହୁଁ । ସେ ବିଷୟରେ କହନ୍ତୁ " । ମୋହନ ଭାଇ କହିଲେ, " ହଁ ଶୁଣ । ତମେ ଜାଣିଛ ଯେ, ଚନ୍ଦ୍ର ସୂର୍ଯ୍ୟକୁ ଆଡୁଆଳ କରିଦେଉଥିବାରୁ ଆମକୁ ସୂର୍ଯ୍ୟ ପରାଗଦେଖାଯାଏ, ଯେତେବେଳେ ଚନ୍ଦ୍ର ସୂର୍ଯ୍ୟକୁ ଆଡୁଆଳ କରିବାକୁ ଆରମ୍ଭ କରେ, ସୂର୍ଯ୍ୟର ସେହି ଅଂଶଗୁଡିକ ଦେଖାଯାଏ ନାହିଁ । ତେଣୁ ସୂର୍ଯ୍ୟଟା ବେଳକୁ ବେଳ ଖଣ୍ଡିଆ ହେବାରେ ଲାଗେ । ମନେ ହୁଏ, ଯେପରି ଆକାଶରେ ଗୋଟିଏ ଉଜ୍ଜ୍ୱଳ ଜହ୍ନ ଦେଖାଯାଉଛି । କ୍ରମେ ଆଲୁଅ କମି କମି ଗଲେ । ମନେ ହୁଏ ଯେପରି ବେଳ ବୁଡି ବୁଡି ଆସୁଛି । ପୂର୍ଣ୍ଣ ସୂର୍ଯ୍ୟ ପରାଗ ବେଳେ ଚନ୍ଦ୍ର ସୂର୍ଯ୍ୟକୁ ପୂରା ଆଡୁଆଳ କରିଦିଏ ।

ତା ଆଗରୁ ସନ୍ଧ୍ୟା ହେଲା ପରି ଲାଗେ । ସାଧାରଣତଃ ସବୁଦିନ ସକାଳ, ପୂର୍ବାହ୍ନ, ମଧ୍ୟାହ୍ନ,ଅପରାହ୍ନ ପରେ ସନ୍ଧ୍ୟା ହୋଇଥାଏ । କିନ୍ତୁ ହଠାତ୍ ଏପରି ଆଲୁଅ କମି ସନ୍ଧ୍ୟା ହୋଇଯିବାରୁ ପଶୁ ପକ୍ଷୀ, ଗଛଲତା ଆଦି ସମସ୍ତେ ଧୋକା ଖାଇଯାଆନ୍ତି । ପକ୍ଷୀମାନେ ସନ୍ଧ୍ୟା ହୋଇଗଲା ଭାବି ରାବଦେଇ ନିଜ ବସା ଆଡକୁ ଫେରି ଆସନ୍ତି । କୁକୁର ଆଦି ପଶୁ ଏ ବିଚିତ୍ର ପରିବେଶ ଦେଖି ଭୁକିବାରେ ଲାଗନ୍ତି । ତୁମେ ଯଦି



ଚିଡିଆ ଖାନା ବା ଜଙ୍ଗଲରେ ଥିବ, ତେବେ ତୁମେ ପଶୁପକ୍ଷୀଙ୍କର ଏ ବିଚିତ୍ର ହାବଭାବ ଓ ସ୍ୱର ଶବ୍ଦ ଶୁଣି ପାରିବ । ଘୃକୁଣ୍ଡା, ଲାଜକୁଳୀ ଆଦି ଗଛ ରାତି ଆସିଲାଣି ଭାବି ନିଜର ପତ୍ର ମୁଦି ଦିଅନ୍ତି ।

ସୂର୍ଯ୍ୟ ପାଖାପାଖି ଜାଗା ବହୁତ ସୁନ୍ଦର ଦେଖାଯାଏ । ରାତି ପରି ସବୁଆଡେ ଅନ୍ଧାର ହୋଇଯାଏ । ଆକାଶରେ ତାରା ସବୁ ଚିକ୍ ମିକ୍ କରନ୍ତି । ଭାବିଲ ଦିନ ଆକାଶରେ ଉଜ୍ଜ୍ୱଳ ତାରା କିପରି ଲାଗିବ ? କେତୋଟି ଗ୍ରହ ବି ଦେଖାଯାଆନ୍ତି ।ଏଥର ପୂର୍ଣ୍ଣ ପରାଗ ଦିଶିବା ଅଞ୍ଚଳରେ ବୁଧ,ଶୁକ୍ର,ମଙ୍ଗଳ,ବୃହସ୍ପତି ଓ ପ୍ଳୁଟୋ ଗ୍ରହ ଆକାଶରେ ଥିବେ, ଏଥିରୁ ଖାଲି ଆଖିରେ ସହଜରେ ଶୁକ୍ର,ମଙ୍ଗଳ ଓ ବୃହସ୍ପତି ଗ୍ରହକୁ ଚିହ୍ନି ହୋଇଯିବ ।

ଏହାଛଡା ଚନ୍ଦ୍ର ସୂର୍ଯ୍ୟଙ୍କୁ ଆଢୁଆଳ କରିଦେବା ପରେ ଚନ୍ଦ୍ରର ଖାଲଗୁଡିକର ଫାଙ୍କ ଦେଇ ସୂର୍ଯ୍ୟର ଉଜ୍ଜ୍ୱଳ କିରଣଟି ଛୋଟ ଛୋଟ ମୁକ୍ତା ପରି ଦିଶିବ ।ଏହା ଖୁବ୍ ସୁନ୍ଦର ଦିଶେ । ଏଗୁଡିକୁ ମୁକ୍ତାମାଳ ବୋଲି କୁହାଯାଏ । ସୂର୍ଯ୍ୟ ପୂରା ଘୋଡେଇ ହୋଇଯିବା ପୂର୍ବରୁ ଏକ ବିଚିତ୍ର ଅନୁଭୂତି ହୋଇଥାଏ । ହଠାତ ଦିଗ୍‌ବଳୟ ଆଡୁ ଲକ୍ଷ ଲକ୍ଷ ପଟା ପଟା କଳା ଛାଇ ତୀବ୍ର ବେଗରେ ଭୂମି ଉପରେ ଧାଇଁ ଯାଏ । ଏହାକୁ ଛାଇ ଲହରୀ ବୋଲି କୁହାଯାଏ । ଢେଉ ଭଳି ତୀବ୍ର ବେଗରେ ମାଡି ଯାଉଥିବାରୁ ମନେ ହୁଏ ଯେପରି ଲକ୍ଷ ଲକ୍ଷ ସାପଙ୍କ ମଝିରେ ତୁମେ ଠିଆ ହୋଇଛ । ପରାଗର ପରେ ପରେ ସୂର୍ଯ୍ୟ ମୁଣ୍ଡ କାଢିବା ପୂର୍ବରୁ ବି ଏହି ଦୃଶ୍ୟର ପୁନରାବୃତ୍ତି ହୁଏ । ଏହା ଏତେ ବେଗରେ ଧାଏଁ ଯେ, ସାଧାରଣ ଲୋକ କ'ଣ ହେଲା ଜାଣିବା ଆଗରୁ ଚମକି ପଡେ । କିନ୍ତୁ ଜାଣିଥିବା ଲୋକ ପାଇଁ ଏହା ଏକ ବିରଳ ଓ ଅଭୁଲା ଅନୁଭୂତି ।ପୃଥିବୀର ବାୟୁମଣ୍ଡଳର ଅସ୍ଥିରତା ଯୋଗୁଁ ଏପରି ଛାଇ ଧାଇଁଥାଏ । ପୂର୍ଣ୍ଣପରାଗ ଅଞ୍ଚଳରେ ଲୋକେ ମାଟି ଉପରେ ଆଗରୁ ଧଳା କନା, ଧୋତି ବା ଧଳା କାଗଜ ବିଛାଇ ଏହାକୁ ପରିଷ୍କାର ଦେଖିପାରନ୍ତି ଓ ଫଟୋ ଉଠାଇ ରଖନ୍ତି ।

ସୂର୍ଯ୍ୟ ଠିକ୍ ଲୁଚିବା ଆଗରୁ ଏବଂ ଠିକ ମୁଣ୍ଡ କାଢିବା ବେଳେ ଆଉ ଏକ ଚମତ୍କାର ଦୃଶ୍ୟ ଦେଖିବାକୁ ମିଳେ । ଏହା ହେଉଛି ହୀରା ମୁଦି । ସୂର୍ଯ୍ୟର କ୍ଷୀଣ ଅଂଶଟି ଦାଉ ଦାଉ ହୋଇ ଝଲସୁଥିବା ବେଳେ ସୂର୍ଯ୍ୟର ଧାରଟା ମୁଦିର

ଗୋଲେଇ ପରି ଦିଶେ । ଏହା ଏକ ଅତି ସୁନ୍ଦର ଦୃଶ୍ୟ ।

ପୂର୍ଣ୍ଣ ପରାଗ ବେଳର ଆଉ ଏକ ବଡ ଆକର୍ଷଣ ହେଉଛି ସୂର୍ଯ୍ୟର **କିରୀଟ** । ସୂର୍ଯ୍ୟର ଉଜ୍ଜ୍ୱଳ ବର୍ଣ୍ଣମଣ୍ଡଳ ଯୋଗୁଁ ସାଧାରଣ ସମୟରେ ଏହାକୁ ଦେଖି ହେଇ ନ ଥାଏ । କିନ୍ତୁ ପୂର୍ଣ୍ଣ ପରାଗ ସମୟରେ ଲୁଚି ଯାଇଥିବା ସୂର୍ଯ୍ୟ ଘେରିପଟେ ଏହା ଉଜ୍ଜ୍ୱଳ ଆଭା ବା ଉଜ୍ଜ୍ୱଳ ଫୁଲ ପାଖୁଡା ପରି ଦୂରକୁ ଲମ୍ବିଥାଏ । ବୈଜ୍ଞାନିକମାନେ ପୂର୍ଣ୍ଣପରାଗ ବେଳେ ହିଁ ସୂର୍ଯ୍ୟ କିରୀଟ ସମ୍ପର୍କରେ ବିଭିନ୍ନ ପରୀକ୍ଷା ଓ ଗବେଷଣା କରିପାରିଥାନ୍ତି । ଖାଲି ଆଖିରେ ବି ଏହା ଅତି ସୁନ୍ଦର ଦେଖାଯାଏ । ପୂର୍ଣ୍ଣ ସୂର୍ଯ୍ୟ ପରାଗର ଠିକ୍ ପୂର୍ବରୁ ଓ ଠିକ ପରେ ଆଉ ଏକ ବଡ ଆକର୍ଷଣ ହେଉଛି **ସୌର ଜ୍ୱାଳା** । କମଳା ଓ ନାଲି ରଙ୍ଗର ଏହି ଉଜ୍ଜ୍ୱଳ ଜ୍ୱାଳାଗୁଡିକ ବହୁ ଦୂରକୁ ଲମ୍ବିଥାଏ ।

ଏହାଛଡା ପୂର୍ଣ୍ଣସୂର୍ଯ୍ୟପରାଗ ବେଳେ ସମୟ ସମୟରେ ସୂର୍ଯ୍ୟ ପାଖର ନୂଆ ଧୂମକେତୁକୁ ବି ଠାବ କରିହୋଇଥାଏ ।

ଏହାର ବିଭିନ୍ନ ବିଶେଷତା ଯୋଗୁଁ ଦେଶ ବିଦେଶର ବୈଜ୍ଞାନିକମାନେ ଏକାଠି ହୋଇ ବିଭିନ୍ନ ରକମର ପରୀକ୍ଷା ମାନ କରିଥାନ୍ତି ।




## ଓଡିଶାରେ ଆମେ କ'ଣ ଦେଖି ପାରିବା ?

ଓଡିଶାରେ ପୂର୍ଣ୍ଣ ସୂର୍ଯ୍ୟ ପରାଗର ଏହି ବୈଚିତ୍ର୍ୟ ଗୁଡିକ ୧୯୮୦ ମସିହାରେ ଦେଖା ଯାଇଥିଲା । କିନ୍ତୁ ଏହାକୁ ଦେଖିବା ପାଇଁ ଅତି କମ ସଂଖ୍ୟକ ଓଡିଆ ବାହାରକୁ ବାହାରି ଥିଲେ । ଅଧିକାଂଶ ଲୋକ ଘରେ ଲୁଚିଥିଲେ । ଏଥର ଦୀପାବଳୀ ସୂର୍ଯ୍ୟପରାଗ ବେଳେ ଆମେମାନେ ଏସବୁ ଦୃଶ୍ୟ ଦେଖିବାକୁ ପାଇବା ନାହିଁ

। ଓଡିଶାର ଉତ୍ତର-ପଶ୍ଚିମ ଓ ଉତ୍ତର-ପୂର୍ବ ଅଂଶର ଜିଲ୍ଲା ଯଥା : ସୁନ୍ଦରଗଡ, ମୟୁରଭଞ୍ଜ, ବାଲେଶ୍ୱର, ଭଦ୍ରଖ ଆଦି ଜିଲ୍ଲା ଏଥର ପୂର୍ଣ୍ଣ ପରାଗ ଅଞ୍ଚଳକୁ ପାଖ ହୋଇଥିବାରୁ ଏଠାରେ ଶତକଡା ୯୫ ରୁ ଶତକଡା ୯୬ ଭାଗ ପୂର୍ଣ୍ଣ ସୂର୍ଯ୍ୟ ପରାଗ ଦେଖିପାରିବେ । ଭୁବନେଶ୍ୱର ଅଞ୍ଚଳ ପାଇଁ ଏହା ଶତକଡା ୯୦ ରୁ ୯୨ ଭାଗ ଏବଂ ଗଞ୍ଜାମ, କୋରାପୁଟ, ଫୁଲବାଣୀ ଆଦି ଜିଲ୍ଲା ପାଇଁ ଏହା ଶତକଡା ୮୫ ରୁ ୮୭ ଭାଗ ।




ଏହା ସକାଳ ସାଢେ ୭ ଟା ବେଳେ ଆରମ୍ଭ ହେବ । ଏ ସମୟରେ ସୂର୍ଯ୍ୟ ପୂର୍ବ ଦିଗ୍‌ବଳୟରୁ ପ୍ରାୟ ୨୩ ଡିଗ୍ରୀ ଚନ୍ଦ୍ର ସୂର୍ଯ୍ୟର ପଶ୍ଚିମ ପଟରୁ ସ୍ପର୍ଶ କରି କ୍ରମେ ପୂର୍ବ ଆଡକୁ ଆଗେଇବ । କ୍ରମେ ସୂର୍ଯ୍ୟ ଅଧିକରୁ ଅଧିକ ଖଣ୍ଡିଆ ହେବାରେ ଲାଗିବ । ସୂର୍ଯ୍ୟ ଲୁଚିବା ସହିତ ଏହାର ଆଲୋକ ବି କମିବାରେ ଲାଗିବ । କମି କମି ୮ ଘଣ୍ଟା ୪୫ ମିନିଟ ବେଳକୁ ସୂର୍ଯ୍ୟର ସର୍ବାଧିକ ଅଂଶ ଲୁଚିଯିବ । ମନେ ହେବ ସତେ ଯେପରି ଏକ ଉଜ୍ଜ୍ୱଳ ସକାଳରେ ଅକାଳ ସନ୍ଧ୍ୟା ଘନେଇ ଆସିଛି ।

ଏହି ଆକସ୍ମିକ ପରିବର୍ତ୍ତନରେ ସାରା ଜୀବଜଗତ ଧୋକା ଖାଇଯାଏ । ଗୋରୁ, ଗାଈ, ଛେଳି ମଇଁଷି ଆଦି ସବୁ ସନ୍ଧ୍ୟା ହୋଇଗଲା ଭାବି ଗୋଠରୁ ଫେରିଆସନ୍ତି । କୁକୁର, କୁକୁଡା ଆଦି ରଡି ଛାଡନ୍ତି । ପକ୍ଷୀଗୁଡିକ ଚିଁ ଚିଁ ଶବ୍ଦ କରି ବସାକୁ ଫେରି ଆସନ୍ତି । ଆକାଶରେ ଏ ସୁନ୍ଦର ଦୃଶ୍ୟ, କମ ଆଲୁଅ ଓ ଉତ୍ତାପ ସାଙ୍ଗକୁ ପଶୁପକ୍ଷୀଙ୍କର ଏ ବିଚିତ୍ର ହାବ ଭାବ ଓ କଳରବ ଠିକ ମନୋରମ ପରିବେଶ ସୃଷ୍ଟି କରିଥାଏ । ଅନ୍ଧାର ଦିଶିବାରୁ ମଶାଗୁଡିକ ବାହାରି କାମୁଡିବାରେ ଲାଗନ୍ତି । ଏଥିରେ ଗଛ ଲତା ମଧ୍ୟ ଧୋକା ଖାଇଯାଆନ୍ତି ।

ଲାଜକୁଳୀ, ଘୃକୁଣ୍ଡା ଆଦି ଗଛ ସନ୍ଧ୍ୟା ଦେଖି ପତ୍ର ମୁଦି ଦିଅନ୍ତି । ଆକାଶ ଅନ୍ଧାର ଦିଶିବା ସହିତ କେତେକ ଉଜ୍ଜ୍ୱଳ ତାରା ଓ ଗ୍ରହ ବି ଦେଖାଯାଆନ୍ତି । ଏଥରର ପରାଗ ବେଳେ ପୂର୍ବ ଆକାଶରେ ଶୁକ୍ର, ମଙ୍ଗଳ ଓ ବୃହସ୍ପତି ଗ୍ରହ ଦେଖାଯାଇପାରେ । ତମେ ତ ତାରା, ଗ୍ରହ ଚିହ୍ନି ଜାଣିଛ । ତେଣୁ ବେଶ ମଜା ଲାଗିବ ଯଦି କିଏ ଦେଖିବ ।

ସର୍ବାଧିକ ଗ୍ରହଣ ପରେ ଚନ୍ଦ୍ର ସୂର୍ଯ୍ୟ ଉପରେ ପୂର୍ବ ଆଡ଼କୁ ଘୁଞ୍ଚି ଚାଲିବ । ଏଥର କ୍ରମେ ଆଲୁଅ ଓ ଉତ୍ତାପ ବଢ଼ିବ । ସବୁ ଦୁନିଆର ଆନନ୍ଦ ଅନ୍ୟ ରୂପ ନେବ । ଦିନ ୧୦ ଘଣ୍ଟା ୧୩ ମିନିଟ ବେଳକୁ ଚନ୍ଦ୍ର ସୂର୍ଯ୍ୟକୁ ଟପିଯିବ ଓ ପରାଗ ନାଟକ ଶେଷ ହେବ । କହିବାକୁ ଗଲେ ଏହା ହେବ ଆମ ଆକାଶରେ ଏକ "ବିଚିତ୍ର ଓ ସବୁଠୁ ଆଖି ଦୃଶିଆ ନାଟକ ।"

କ୍ରମେ ସନ୍ଧ୍ୟା ହୋଇ ଆସୁଥାଏ । ଏଥର ବୁଲୁ ଗୁରୁଜୀ ଉଠିଲେ । କହିଲେ ମୋହନ, ତୁମକୁ ବହୁତ ଧନ୍ୟବାଦ ,ତୁମ କଥାରେ ପିଲାଏ ଏତେ ମାତି ଛନ୍ତି ଯେ, ଘରକୁ ଯିବା କଥା ବୋଧେ ଭୁଲିଯାଇଛନ୍ତି । ସନ୍ଧ୍ୟା ହେଲାଣି । ତେଣୁ ପିଲାଏ ଏବେ ଫେରିଯାଆନ୍ତୁ । ଆମେ ଆଗକୁ ଏଠାରେ ପରାଗ ଦେଖିବା ଏବଂ ବିଭିନ୍ନ ପରୀକ୍ଷା କରିବା ବିଷୟରେ କଥା ହେବା ଏବଂ ପ୍ରସ୍ତୁତ ହେବା । ଆମ ସହ ସୁମି ଗୁରୁମା ବି ଅଛନ୍ତି ।

ପିଲାଏ କୁରୁ କୁରୁ ହୋଇ ଉଠିଲେ । ଯାଉ ଯାଉ କହୁଥାନ୍ତି 'ଆପଣଙ୍କୁ ବହୁତ ବହୁତ ଧନ୍ୟବାଦ' । 'ଆମେ କିପରି ଦେଖିବୁ ସେ କଥା ଗୁରୁଜୀଙ୍କୁ କହି ଦେବେ ।'

ଏ ସମୟରେ ମୋହନ ଭାଇ ହଠାତ୍ ଚିତ୍କାର କରି କହିଲେ 'ଆରେ ପିଲାମାନେ , ଶୁଣ ଶୁଣ । ମୁଁ ଗୋଟିଏ ଅତି ଦରକାରୀ କଥା କହିବାକୁ ଭୁଲି ଯାଇଥିଲି । ଏପରି କହି ସେ କଳାପଟାରେ ଲେଖିଦେଲେ ।

**"କେହି ବି ଖାଲି ଆଖିରେ ସୂର୍ଯ୍ୟ ପରାଗ ସିଧା ଦେଖିବ ନାହିଁ ।"**

ଏହାକୁ ପୁଣି ପଢ଼ି ସେ କହିଲେ"ଏହା ଅତି ଜରୁରୀ । ତୁମେ କିପରି ସୂର୍ଯ୍ୟପରାଗ ଦେଖିପାରିବ ସେ ବିଷୟରେ ଗୁରୁଜୀ ତୁମକୁ ବତାଇବେ ।

ଆଜିର ଆଲୋଚନା ଏତିକିରେ ସରିଲା । ପିଲାଙ୍କ ଝୁଙ୍କ ଆହୁରି ବଢ଼ି

ଯାଇଥାଏ । କିଏ ଜଣେ ଖୁସିରେ ସ୍ୱତଃ ଗାଇ ପକାଇଲା ।"

ଆରେ ବାଃ, ଆରେ ବାଃ, ଆରେ ବାଃ,
ସୂର୍ଯ୍ୟ ପରାଗ ନିଶ୍ଚେ ଦେଖିବା ।"

ପିଲାଏ ଖୁସିରେ ତା ସହ ମିଶି ତାଳି ମାରି ଗାଇଲେ ଓ ଘର ଆଡକୁ ମୁହାଁଇଲେ ।

## ପରାଗ ପାଖେଇଲା

ଗ୍ରହଣ ଆଉ ୩ ଦିନ ବାକି ଥାଏ । ପିଲାଙ୍କ ଆଗ୍ରହ ବଢ଼ିଚାଲିଲା ବେଳକୁ ଆରପଟ ଦୁନିଆଁର ଓଲଟା କଟକଣା ବଢ଼ିଚାଲିଲା । ସବୁ ଖବର କାଗଜରେ ବଡ ବଡ ଅକ୍ଷରରେ ବାହାରିଲା । ସୂର୍ଯ୍ୟପରାଗ ହେବ । ପାଞ୍ଜି ଓ ପୁରାଣକୁ ଆଧାର କରି କେତେ ଅଖାଡୁଆ ରୀତି ନୀତି ଲେଖାଗଲା । ବାହାରକୁ ନ ବାହାରିବାକୁ ତାଗିଦ କରି ଦିଆଗଲା । ଟି.ଭି., ରେଡିଓ, ପତ୍ରିକା ସମସ୍ତେ ବଡ ଜୋରସୋରରେ ଏକା କଟକଣାକୁ ପ୍ରଚାର କଲେ ।



ଗାଁ ପୁରୋହିତ ଘରକୁ ଆସି ପରାଗ ଦିନ ଦାନ ନେବାକୁ ଆସିବେ କହି କେତେ ବିଧି ବିଧାନ ବତାଇ ଦେଇଗଲେ । ପରାଗଟାକୁ ଏକ ଭୟଙ୍କର ଓ ଅଶୁଭ ଘଟଣା ବୋଲି କହିବା ସାଙ୍ଗକୁ ଦେଶରେ ନେତା ମରିଯିବେ, ବନ୍ୟା ହେବ, ମରୁଡି ହେବ ଏମିତି କେତେ କ'ଣ ଭା'ରି ହୁରି ପକାଇଲେ ।

ସାରା ଗାଁ,ଟିଭି, ରେଡିଓ, ଖବର କାଗଜ, ପତ୍ରିକା ଆଦିରେ ପରାଗର ବିଶେଷତାକୁ ଗୁରୁତ୍ୱ ଦେବା ଅପେକ୍ଷା ଗୁଡାଏ ଭୟଙ୍କର ବର୍ଣ୍ଣନା ଚାଲିଥାଏ ।ସମସ୍ତେ ଘରେ ଲୁଚିବା ପାଇଁ ପ୍ରସ୍ତୁତ ହେଉଥାନ୍ତି ।ଟିଭିରେ ବି କୁଆଡେ ପ୍ରଚାର ହୋଇଗଲାଣି ଯେ, ପରାଗ ସମୟରେ କୁଆଡେ ଗୋଟିଏ ନାଁ କଲା ସିନେମା ଅଛି । ତେଣୁ ସମସ୍ତେ ଖୁସି ।



## ବୁଲୁ ଗୁରୁଜୀଙ୍କ ନୂଆ ଅଭିଯାନ

ଗୋଟିଏ ପଟେ ପରାଗକୁ ଡରି ଲୁଚିବାର ପ୍ରସ୍ତୁତ ଚାଲିଥିଲା ବେଳେ ସ୍କୁଲରେ ଗାଁର ଅନେକ ଟିକି ବିଜ୍ଞାନୀ ବୁଲୁ ଗୁରୁଜୀଙ୍କ ତତ୍ତ୍ୱାବଧାନରେ ସୂର୍ଯ୍ୟ ପରାଗକୁ ସ୍ୱାଗତ କରିବାକୁ ପ୍ରସ୍ତୁତି ଚଳାଇଥାନ୍ତି ।ଗୁରୁଜୀ ସହରକୁ ଯାଇ ସୂର୍ଯ୍ୟ ଚଷମା, ଆଦି କିଛି ଜିନିଷ ସଂଗ୍ରହ କରିଥାନ୍ତି ।ସେମାନେ ୧୦ଟି ଛୋଟ ପରୀକ୍ଷା କରିବା ପାଇଁ ପ୍ରସ୍ତୁତ ହେଉ ଥାଆନ୍ତି ।

କେତେଜଣଙ୍କ ଘରେ ବାପା ମା' ଏହି କଥା ଜାଣିଲା ପରେ ଭିତରେ ଭିତରେ କୁକ୍ସୁ କୁକ୍ସୁ ହେଉଥାଆନ୍ତି ।କିନ୍ତୁ ବୁଲୁ ଗୁରୁଜୀଙ୍କ ଉପରେ ସମସ୍ତଙ୍କର ଭରସା ଥିବାରୁ କିଛି କହିପାରୁ ନ ଥାନ୍ତି ।କିନ୍ତୁ କେତେଜଣଙ୍କ ବାପା ପିଲାଙ୍କୁ ଜବରଦସ୍ତ ଅଟକାଇଥାନ୍ତି ।ବୁଲୁ ଗୁରୁଜୀ କହିଥାନ୍ତି ଯିଏ ଆଗ୍ରହୀ ଓ ଯାହାଘରେ ରାଜି ଅଛନ୍ତି ସେମାନେ ଆସ ।ମୁଁ କାହାକୁ ବାଧ୍ୟ କରିବି ନାହିଁ ।

ଲୀନା,ମୁନା ଘରେ କିନ୍ତୁ କଟକଣା ଅଧିକ ବୁଢୀ ମା' ଜମା ରାଜି ହେଉ ନ ଥାଏ।ତେଣୁ ବାପା ମା' ବି କିଛି କହିପାରୁ ନ ଥାନ୍ତି ।ତାଙ୍କର ନୀରବତା ଯୋଗୁଁ ପିଲା ଦି'ଟା ସ୍କୁଲରେ ପ୍ରସ୍ତୁତ ହେଉଥିଲେ ମଧ୍ୟ ଘରେ କିଛି କରିପାରୁ ନ ଥାନ୍ତି ।

ଭିତରେ ଭିତରେ କେତେ ଯୋଜନା ଚଳାଇଥାନ୍ତି ।

## ୨୪ ଅକ୍ଟୋବର ୧୯୯୫

ଦୀପାବଳୀ ଅମାବାସ୍ୟା । ଗାଁଟା ସାରା ଦୀପ ଜଳି ଅନ୍ଧାରରେ ଗାଁଟା ହସିଲା । ବାଣ ଫୁଟାଇଲା,ହସଖୁସିର ମଉଜ ଚାଲିଲା । ପରାଗ ସମୟ ଆସିଗଲା । ସେ ଦିନ ସ୍କୁଲ, କଲେଜ, ସରକାରୀ ଅଫିସ,ଦୋକାନ ବଜାର ସବୁ ବନ୍ଦ , ସକାଳ ସାଢେ ସାତଟା ବେଳେ ପରାଗ ଆରମ୍ଭ । ତେଣୁ ରାତି ୩ଟାରୁ ଉଠି ମା' ରୋଷେଇ କରି ସମସ୍ତଙ୍କୁ ପେଟେ ପେଟେ ଖୁଆଇ ଦେଲେ ।ଏଥର ପାକତ୍ୟାଗ । ସବୁ ଘର ଧୋଇ ପାଣି, ରୋଷେଇ ହାଣ୍ଡି ଆଦି ସବୁ ଜାଗାରେ କୁଶ ଓ ତୁଳସୀ ପାଣି ଛିଞ୍ଚିଥାନ୍ତି ।ସମସ୍ତେ ଗାଧୋଇ ପଡି ରାତି ସାଢେ ୩ଟାରୁ ପୂଜା ପ୍ରାର୍ଥନା ଆରମ୍ଭ କରିଦେଲେ ।ଛୁଆ ଦୁଇଟା ବୁଢୀମାର କଟକଣାରେ ମନ ନ ଥିଲେ ବି ନ ଛୋଡ ବନ୍ଧା । ଏତେ ମନ ଭିତରେ ଭାବି ଚାଲିଥାନ୍ତି କିପରି ସ୍କୁଲରେ ପହଞ୍ଚିବେ । ଘରେ ଏକ ନୂଆ ହାବଭାବ ଚାଲିଥାଏ ।



## ପିଲା ଦି'ଟା ହଜିଗଲେ !

ସବୁଦିନ ପରିରାତି ପାହିଲା । ଆଜି ଟିଭି ଓ ରେଡିଓରେ ଲଗାତାର ମନ ଲୋଭା କାର୍ଯ୍ୟକ୍ରମ । ଘରେ ବୁଢୀମା ପୂଜା ଚଳାଇଥାଏ । ବାପା ମା ତଳେ ବସି ଟିଭିକୁ ଅନେଇ ଥାନ୍ତି । ଲୀନା ଓ ମୁନା ବି କିଛି ସମୟ ବସିଲେ । ମନଟା ଅନ୍ୟ ଆଡେ ଖାଲି ନା'କୁ ବସିଛନ୍ତି । ଉଠୁଥାନ୍ତି ବସୁଥାନ୍ତି । ମୁନା ଖାଲି ଲୀନାର

ମୁହଁଟାକୁ ଅନାଉଥାଏ ।

କିଛି ସମୟ ପରେ ଦୁହେଁ ଯାଇ ଆର ଘର ଝରକା ପାଖ ଚଉକିରେ ବସି ଦେଖିଥାନ୍ତି । କବାଟ ଝରକା ସବୁ ବନ୍ଦ ଥାଏ । ଘର ସାରା ଅନ୍ଧାର । ଖାଲି ଟି.ଭି. ଘରେ ଡିମ ଲାଇଟଟା ଜଳୁଥାଏ । କିଛି ସମୟ ପରେ ସମୟ କେତେ ଜାଣିବାକୁ ମା'ଙ୍କର ଇଛା ହେଲା । ସେ ଦେଖିଥିଲେ ଯେ, ଲୀନା ଓ ମୁନା ମଝି ଘରେ ଝରକା ପାଖରେ ବସି ଟିଭି ଦେଖୁଛନ୍ତି । ସେ ଘରେ ଘଡିଟା ଥାଏ । ମା କହିଲେ 'ମୁନା, ସମୟ କେତେ ହେଲା ?'

କିଛି ଉତ୍ତର ନାହିଁ । ମା' ଭାବିଲେ ବୋଧେ ଟିଭି ଶବ୍ଦରେ ପିଲା ଦି'ଟା ଶୁଣି ପାରି ନାହାନ୍ତି । ଏଥର ଟିଭି ଶବ୍ଦକୁ ଟପାଇ ଜୋରରେ ପଚ୍ଚରିଲେ । କିନ୍ତୁ ଉତ୍ତର ଆସିଲା ନାହିଁ । ସେ ବୁଲିକି ଚ୍ହହିଁଲା ବେଳକୁ ପିଲା ଦି'ଟା ଦିଶୁନାହାନ୍ତି । ବାପା ବି ଏହା ଦେଖିଲେ ।

ଘର ସାରା ସମସ୍ତେ ଘେରାଏ ଖୋଜି ଆସିଲେ । ଆରେ ଏ ଦି'ଟା କୁଆଡେ ଗଲେ ?'' ଖଟତଳ,କବାଟ କୋଣ, ଠାକୁର ଘର କେଉଁ ଠି ବି ନାହାନ୍ତି । ବାପା ମା'ଙ୍କ ମୁଣ୍ଡ ବିଗିଡି ଗଲା । ପରାଗ ବେଳ । କୁଆଡେ ଗଲେ ? କି ଦୁଷ୍ଟ ଛୁଆ ଦି'ଟା ? ପରାଗ ଯୋଗୁଁ କ'ଣ ନାହିଁ କ'ଣ ହେବ । ଦୁହିଁଙ୍କମନକୁ କେତେ କ'ଣ ପାପ ଛୁଉଁଥାଏ । ବୁଢୀ ମାଁ ଏକଥା ଜାଣି ରାଗରେ ଉଛନ୍ନ । କେତେ କ'ଣ ଗାଳି ଦେଲାଣି ବାପା ମା'ଙ୍କୁ ।

ଏ ସମୟରେ ବାପାଙ୍କ ଆଖି ଖଟ ଉପରେ କ'ଣ ଗୋଟିଏ ଧଳା କାଗଜ ଉପରେ ପଡିଲା । ସେଥିରେ ଲୀନା ଲେଖିଥାଏ । '' ମା' ରାଗିବୁନି । ଆମେ ସ୍କୁଲକୁ ଯାଉଛୁ । ପରାଗ ଦେଖିବୁ । ତୁମେ ଦୁହେଁ ବି ଆସ ।''

ଏ ଚିଠି ପଢି ବାପା,ମା',ବୁଢୀ ମା' ଯେତିକି ଆଶ୍ୱସ୍ତ ହେଲେ , ତା'ଠୁ ବେଶୀ ରାଗିଲେ ।

ସେତେବେଳକୁ ସକାଳ ସାଢେ ୭ଟା ବାଜି ଥାଏ । ପିଲା ଦି'ଟା ଘରୁ ଅଧା ଘଣ୍ଟା ହେଲା ବାରିପଟେ ପଳାଇଛନ୍ତି । ଘରର ରୀତିନୀତି ସବୁ ଗଲା । ବାପା ମା' ରାଗ ତମ ତମ ହୋଇ ଦୁଆର ଖୋଲିଲେ । କାଳେ ଛୁଆ ଦି'ଟାଙ୍କର କ'ଣ ହୋଇଯିବ !

## ଦୁନିଆ ବନ୍ଦ

କେହି କୁଆଡେ ନ ଥାନ୍ତି । ଘର ଦୁଆର ଦୋକାନ ବଜାର ସବୁ ବନ୍ଦ ଥାଏ । ରାସ୍ତାଘାଟ ନିଛାଟିଆ । ଗ୍ରହଣ ଆରମ୍ଭ ହୋଇ ଯାଇଥାଏ । ବାପା ମା ସୂର୍ଯ୍ୟକୁ ଚ୍ୱହୁଁ ନ ଥାନ୍ତି । ରାଗ ସାଙ୍ଗକୁ "କିଏ ଦେଖିଲେ କ'ଣ ଭାବିବ" ଚିନ୍ତା ଯୋଗୁ ଜଲଦି ଚ୍ୱଲିଥାନ୍ତି । ସ୍କୁଲଟା ୧୫ମିନିଟର ବାଟ ।

ସେମାନେ ସ୍କୁଲ ପାଖରେ ପହଞ୍ଚିଲେ ଦୂରରୁ ଗୋଟିଏ ଧଳା କନା ଦେଖାଯାଉଥାଏ । ସେଥିରେ ଲେଖାଥାଏ "ସ୍ୱାଗତମ୍ ସୂର୍ଯ୍ୟ ପରାଗ" । ତା ତଳେ ଲେଖା ଥାଏ କେହି ଖାଲି ଆଖିରେ ସୂର୍ଯ୍ୟକୁ ଚ୍ୱହିଁବେ ନାହିଁ । ସ୍କୁଲ ପରିସରରେ ସେମାନେ ପଶିଲେ । କିନ୍ତୁ ଦେଖିଲାବେଳକୁ ସେମାନେ ହିଁ ଆସି ନାହାନ୍ତି । ଆହୁରି କେହି ପିଲାଙ୍କର ବାପା ମା' ବି ଏପରି ରାଗି ପହଞ୍ଚିଥାନ୍ତି । ଅବଶ୍ୟ ଆଉ କେତେଜଣଙ୍କର ଭାଇ,ଭଉଣୀ ଓ ବାପା,ମା'ମାନେ ପିଲାଙ୍କ କୁହାକୁ ମାନି ନିଜ ଆଗ୍ରହରେ ଆସିଥାନ୍ତି । ଦୁହେଁ ସ୍କୁଲରେ ଗୁରୁଜୀଙ୍କୁ କିଛି ପଚ୍ୱରିବା ଆଗରୁ ଲୀନା,ମୁନା ପରୀକ୍ଷା କରୁଛନ୍ତି । ଆସନ୍ତୁ ଦେଖିବେ । 'କହି ଗୁରୁଜୀ ତାଙ୍କୁ ପାଛୋଟି ନେଲେ ।'

## ଟିକି ବିଜ୍ଞାନୀଙ୍କ ପରାଗ ପରଖ

ଦଳ ଦଳ ହୋଇ ପିଲାମାନେ ବିଭିନ୍ନ ଜାଗାରେ ବସି କ'ଣ ପରୀକ୍ଷା କରୁଥାନ୍ତି । ବୁଲୁ ଗୁରୁଜୀ ପାଖେ ପାଖେ ରଖି ତାଙ୍କୁ ଶିଖାଉଥାନ୍ତି ।

ଅବଶ୍ୟ ଏହି ପ୍ରସ୍ତୁତି ସେହି ଦିନର ହିଁ ନ ଥିଲା । ଗତ ସପ୍ତାହେ ହେଲା ସେମାନେ ଚୁପଚ୍ୱପ ଏହିପରି ପ୍ରସ୍ତୁତ ହେଉଥିଲେ । ସେଗୁଡିକ ଏପରି ଥିଲା ।

**୧)ପାଣିରେ ଗ୍ରହଣ ଦେଖା** : ତିନୋଟି ଜାଗାରେ ପିଲାମାନେ ଦଳଦଳ ହୋଇ ବସିଥାନ୍ତି । ଗୋଟିଏ ଜାଗାରେ ଗୋଟିଏ ଗହିରିଆ ଥାଳୀରେ ସେମାନେ ପାଣିରେ ଯଥେଷ୍ଟ **କଳା କାଳି** ମିଶାଇଥାନ୍ତି । ଆଉ ଗୋଟିଏ ଜାଗାରେ ସେମାନେ **ହଳଦୀ ପାଣି** ରଖିଥାନ୍ତି । ଆଉ ଏକ ଜାଗାରେ ସେମାନେ **ଗୋବର ପାଣି** ରଖିଥାନ୍ତି । ଏହି ତିନୋଟି ଜାଗାରେ ସୂର୍ଯ୍ୟର ପ୍ରତିଫଳନ ପଡୁଥାଏ । ତିନିଟିଯାକ ଦଳର ପିଲା ଏହାକୁ ଦେଖି କାଗଜରେ

ସୂର୍ଯ୍ୟପରାଗର ବିଭିନ୍ନ ସମୟରେ ଚିତ୍ର ଆଙ୍କି ଚାଲିଥାନ୍ତି ।

୨) **ଦର୍ପଣରେ ଗ୍ରହଣ ଦେଖା :** ଦୁଇଟି ଦଳରେ ପିଲା ଦର୍ପଣ ସାହାଯ୍ୟରେ ପରାଗ ଦେଖୁଥାନ୍ତି ।

(କ) ଏହି ଦଳଟିରେ ଗୋଟିଏ ଦର୍ପଣ ଉପରେ ଗୋଟିଏ ଧଳା କାଗଜ ମଡେଇ ଦିଆଯାଇଥାଏ । କାଗଜ ମଝିରେ ଗୋଟିଏ ମଟର ଚଣା ଆକାରର କଣା କରିଦିଆଯାଇଥାଏ । ସେହି ଅଂଶରେ ହିଁ ଦର୍ପଣଟି ଦେଖାଯାଉଥାଏ । ଦର୍ପଣଟିକୁ ସୂର୍ଯ୍ୟ ଆଡକୁ ମୁହାଁଇ ଏହାର ପ୍ରତିଫଳନକୁ କାନ୍ଥ ଉପରେ ପକାଯାଇଥାଏ । କାନ୍ଥ ଉପରେ ସୂର୍ଯ୍ୟ ପରାଗର ଛବିଟି ପରିଷ୍କାର ଦେଖାଯାଉଥାଏ । ଏହାକୁ ସମୟ ଅନୁସାରେ ପିଲାଏ କାଗଜରେ ଆଙ୍କୁଥାନ୍ତି ।

(ଖ) ଆଉ ଗୋଟିଏ ଦଳ ଦର୍ପଣ କାଗଜ ଉପରେ ଦୁଇଗୁଣ ବଡ ଗୋଲ କଣାଟିରେ ସୂର୍ଯ୍ୟର ଛବିକୁ କାନ୍ଥ ଉପରେ ପକାଇବାକୁ ଚେଷ୍ଟା କରୁଥାନ୍ତି ।

୩) **କାଗଜ କଣା ଦେଇ ଗ୍ରହଣ ଦେଖା** ଗୋଟିଏ ଦଳ ଗୋଟିଏ ମୋଟା କାଗଜର ମଝିରେ ଧୂପକାଠିର ନିଆଁଝୁଲ ଛୁଆଁଇ ଛୋଟ କଣାଟିଏ କରିଥାନ୍ତି । ଏହା ଉପରେ ସୂର୍ଯ୍ୟ କିରଣ ପଡି ତାର ଏକ ଛବି କାନ୍ଥ ଉପରେ ପଡୁଥାଏ । ଏହିଥିରୁ ସେମାନେ ପରାଗ ଦେଖିବା ସହିତ ସୂର୍ଯ୍ୟର ବଦଳୁଥିବା ଆକାରକୁ ଆଙ୍କି ସମୟ ଟିପି ରଖୁଥାନ୍ତି ।

## ଟିଣ କଣା ଓ ପରାଗ :

୪) ସ୍କୁଲ ଛାତି ଟିଣରେ ତିଆରି ହୋଇଥାଏ । ଗୋଟିଏ ବଖରାରେ ଛାତରେ ଦୁଇଟି କଣା ଥାଏ । ଦୁଇଦଳ ପିଲା ସେ ଘର ଭିତରେ କିଛି ସମୟ ପାଇଁ କବାଟ ବନ୍ଦ କରି ଚଟାଣ ଉପରେ କଣା ଦେଇ ପଡୁଥିବା ଆଲୁଅକୁ ଲକ୍ଷ୍ୟକଲେ । ସେଠାରେ ପରାଗ ବେଳେ ସେମାନେ ସୂର୍ଯ୍ୟର ଖଣ୍ଡିଆ ରୂପକୁ ଦେଖି ଟିପି ରଖିଲେ ।

୫) **ଗଛତଳେ ଜହ୍ନମାଳ :** ଗୋଟିଏ ଗଛମୂଳେ କିଛି ପିଲା କଣ ଦେଖୁଥାନ୍ତି । ବାପା ମା' ସେଠାରେ ପହଞ୍ଚିଲେ । ସେମାନେ ଆଗରୁ ଦେଖିଥିଲେ ପତ୍ର

ଫାଙ୍କରେ ସୂର୍ଯ୍ୟ କିରଣ ଆସି ଗଛ ଛାଇରେ ଗୋଲିଆ ଆଲୁଅ ଦେଖାଯାଇଥାଏ । ଏଗୁଡିକ ସୂର୍ଯ୍ୟର ଛବି । କିନ୍ତୁ ପରାଗ ବେଳେ କି ଅଦ୍ଭୁତ ଦୃଶ୍ୟ । ସେଗୁଡିକ ଖଣ୍ଡିଆ ଦିଶୁଥାଏ । ଅନେକ ଖଣ୍ଡିଆ ଆଲୁଅରୁ ମନେ ହେଉଥାଏ ଯେପରି ସେଠାରେ କେତେଗୁଡିଏ ଖଣ୍ଡିଆ ଜହ୍ନ ପଡିଛି । ପିଲାଏ ତାକୁ ଘେରିଯାଇ ସମୟ ସହ ସେଗୁଡିକର ଆକାରକୁ କାଗଜରେ ଟିପି ରଖୁଥାନ୍ତି ।

୬) **କାଗଜପୋଡା ପରୀକ୍ଷା** : ଦଳେ ପିଲା ଗୋଟିଏ ଖୋଲା ଜାଗାରେ ବସିଥାନ୍ତି । ତାଙ୍କ ହାତରେ ଖଣ୍ଡିଏ ଲେଖାଏଁ ଯବକାଚ । ତଳେ ଖଣ୍ଡିଏ ଲେଖାଏଁ କାଗଜ ରଖି ସେମାନେ ଯବକାଚ ସାହାଯ୍ୟରେ ସୂର୍ଯ୍ୟ କିରଣକୁ ଏକାଠି କରି କାଗଜ ପୋଡୁଥାନ୍ତି । ବିଶେଷ କରି ପରାଗ ଆଗରୁ ପରାଗ ଆରମ୍ଭ ବେଳେ, ସର୍ବାଧିକ ପରାଗ ବେଳେ ଓ ପରେ ତାଙ୍କ ପାଇଁ ବେଶୀ ଗୁରୁତ୍ୱପୂର୍ଣ୍ଣ ଥିଲା । ପ୍ରତିଥର କାଗଜ ପୋଡିବାକୁ କେତେ ସମୟ ଲାଗୁଛି ତାହା ସେମାନେ ଟିପି ରଖୁଥିଲେ ।

୭) **ଧୂପକାଠିର ଝୁଲ** : ଗୋଟିଏ ଦଳ ଦୁଇଟି ଧୂପକାଠି ଜାଳି ବାହାରେ ବସିଥାନ୍ତି । ସାଧାରଣତଃ ଦିନ ବେଳା ଧୂପକାଠିଟିଏର ନିଆଁଝୁଲକୁ ଦେଖି ହୋଇ ନ ଥାଏ । କିନ୍ତୁ କ୍ରମେ ପରାଗ ବଢିବା ସହିତ ନିଆଁ ଝୁଲଟି କ୍ରମେ ଦେଖାଗଲା । ପିଲାଏ ଖୁସିରେ ଚିତ୍କାର କରି ଉଠିଲେ ।

୮) **ଗଛର ଦିନ ନିଦ** : ଲାଜକୁଳୀ ଗଛ କଡରେ ଦଳେ ପିଲା ଓ ଚକୁଣ୍ଡା ଗଛ ପାଖରେ ଦଳେ ପିଲା ବସିଥାନ୍ତି । ଏହିଦଳ ଭିତରେ ଲୀନା ବି ମନ ଦେଇ ଦେଖୁଥାଏ । ଗ୍ରହଣ ବଢିବା ସହିତ ଚକୁଣ୍ଡା ଓ ଲାଜକୁଳୀ ଗଛ ନିଜର ପତ୍ରକୁ ଜାକିଦେଲେ । ତାଙ୍କୁ ଲାଗୁଥିଲା ରାତି ହୋଇଗଲା । ପିଲାଏ ଘଡିକୁ ଦେଖି ଏହି ଚିତ୍ର ଓ ବିବରଣୀ ଟିପି ରଖୁଥାନ୍ତି ।

ଏସବୁ ଦେଖୁ ଦେଖୁ କ୍ରମେ ବାପା ମା'ଙ୍କ ରାଗଟା ବଦଳି ତାଙ୍କର ବି କୌତୂହଳୀ ବଢି ଚାଲିଥାଏ । ବାପା ଖୁସିରେ କହି ପକାଇଲେ ଏଇ ଲୀନା, ଆମେ ବି ଆସିଛୁ ।'' ଲୀନା ଡରରେ ଚାହୁଁ ଚାହୁଁ ମା' ବାପାଙ୍କ ଖୁସି ଦେଖି ତାଳି ମାରି ଧାଇଁ ଆସିଲା । ବାପା ଧାଇଁ ଯାଇ ତାକୁ ଅଟକାଇଲେ ଓ

ସ୍ନେହରେ କହିଲେ " ତୁ ପରା ପରୀକ୍ଷା କରୁଛୁ । ଯାଆ "

୯) **ପଶୁ ପକ୍ଷୀଙ୍କ ହାବଭାବ** : ପରାଗ ବଢ଼ି ଗ୍ଲିଲା । କ୍ରମେ ସବୁଆଡେ ଅନ୍ଧାରୁଆ ଜଣାପଡିଲା । ବୁଲା କୁକୁରଗୁଡାକ ଭୁକି ଉଠିଲେ । କୁକୁଡା ରାବୁଥାନ୍ତି । ପକ୍ଷୀସବୁ ରାତି ଆସିଗଲା ଭାବି ରାବ ଦେଇ ନିଜ ବସାକୁ ଫେରି ଆସୁଥାନ୍ତି । ଦଳେ ପିଲା ସମୟ ଅନୁସାରେ କେଉଁ ପଶୁପକ୍ଷୀ କଣ କରୁଛନ୍ତି ଟିପି ରଖୁଥାନ୍ତି । ଏହା ତାଙ୍କୁ ଭାରି ମଜା ଲାଗୁଥାଏ ।

୧୦) **ଆକାଶର ରୂପ** : ଦଳେ ପିଲା ଏକ ବିଶେଷ ଧରଣର ସୂର୍ଯ୍ୟ ଚଷମା ପିନ୍ଧି ଆକାଶକୁ ଗ୍ୱହୁଁଥାନ୍ତି ଓ ସମୟ ଅନୁସାରେ ଯାହା ଯାହା ଲକ୍ଷ୍ୟ କଲେତାକୁ ଟିପି ରଖୁଥାନ୍ତି ।

୧୧) **ଆକାଶରେ ଗ୍ରହ ତାରା**: ସର୍ବାଧିକ ଗ୍ରହଣ ବେଳେ ପୂର୍ବ ଆକାଶରେ ଶୁକ୍ର, ବୃହସ୍ପତି ଓ ମଙ୍ଗଳ ଗ୍ରହ ଦେଖାଗଲେ । ଏହାଛଡା ଆକାଶରେ କେତୋଟି ଉଜ୍ଜ୍ୱଳ ଗ୍ରହ ଦେଖାଗଲେ । ପିଲାଏ କେଉଁ ଜାଗାରେ କେଉଁ ତାରା ଓ କେଉଂ ଗ୍ରହ ଦିଶିଲେ ତାଙ୍କୁ ଟିପି ରଖୁଥାନ୍ତି ।

୧୨) **ଦୂରବୀକ୍ଷଣରେ ସୂର୍ଯ୍ୟ ପରାଗ** : ଗୋଟିଏ ଖୋଲା ଜାଗାରେ ସୁମି ଗୁରୁମା ଦଳେ ପିଲାଙ୍କୁ ଧରି କ'ଣ କରୁଥାଆନ୍ତି । ସେଠାରେ ଲେଖା ଥାଏ -" ଦେଖିବେ ଆସନ୍ତୁ । ସୂର୍ଯ୍ୟ ଗ୍ରହଣର ମଜା " । ସେମାନେ ଗୋଟିଏ ଦୂରବୀକ୍ଷଣକୁ ସୂର୍ଯ୍ୟ ଆଡକୁ ମୁହାଇଁ ରଖିଥାନ୍ତି । ଯେପରି ମାଟି ଉପରେ ଏହାର ନଳୀର ଛାଇଟି ସବୁଠୁ ଛୋଟ ଓ ଗୋଲ ହୋଇଥିଲା । ତାର ନେତ୍ରିକା ମୁହଁରେ ଗୋଟିଏ ଛୋଟିଆ କାଠ ପଟା ଡିବା ଲଗାଇଥାନ୍ତି । ଡବାଟିର ପଛ ମୁହଁରେ ଗୋଟିଏ କାଗଜ (ନକଲ କରିବା କାଗଜରେ ଭଲ ହୁଏ) ଦିଆଯାଇଥାଏ । ଏହା ଉପରେ ସୂର୍ଯ୍ୟର ଛବି ପରିଷ୍କାର ଦେଖାଯାଉ ଥାଏ । ସମସ୍ତେ ସମୟ ଅନୁସାରେ ଏହାର ଛବିକୁ ଆଙ୍କି ରଖୁଥାନ୍ତି ।

## ଆଜି ସ୍କୁଲରେ କିଏ କିଏ ?

ସେଦିନ ସ୍କୁଲର ୫ ଜଣ ଶିକ୍ଷକ, ଶିକ୍ଷିକାଙ୍କ ମଧ୍ୟରୁ ୨ ଜଣ ହିଁ ଉପସ୍ଥିତ ଥିଲେ । ବୁଲୁ ଗୁରୁଜୀ ଓ ସୁମି ଗୁରୁମା । ବାକି ସମସ୍ତେ ନିଜଘରେ ଲୁଚି

ଥିଲେ । ଗୁରୁଜୀ କାହାକୁ ବି ବାଧ୍ୟ କରି ନ ଥିଲେ । ସୁମି ଗୁରୁମା ନିଜ ଆଗ୍ରହରେ ଆସି ଥିଲେ ।

ପିଲାଙ୍କ ଭିତରୁ ଅଧା ଅଧି ପିଲା ବହୁ କଷ୍ଟରେ ଘରେ ରାଜି କରାଇ ବା ବାପାମା'ଙ୍କ ସହିତ ଆସିଥିଲେ । ଲୀନା, ମୁନା ପରି କିଛି ଅତି ଆଗ୍ରହୀ ପିଲା ଘରୁ ବାହାରି ବାର ବାଟ ନ ପାଇ ଲୁଚି ପଳାଇ ଆସିଥିଲେ । ତେଣୁ ପ୍ରାୟ ୫୦ ସରିକି ବାପା ମା' ବାଧ୍ୟହୋଇ ବା ପିଲାଙ୍କୁ ଖୋଜିବାକୁ ରାଗରେ ତମ ତମ ହୋଇ ସ୍କୁଲରେ ପହଞ୍ଚିଥିଲେ । କିନ୍ତୁ ସମସ୍ତଙ୍କ ରାଗ ଉଭେଇ ଯାଇ ଅତିଶୟ କୌତୂହଳୀ ଦେଖା ଦେଇଥିଲା ।

ଏହା ପଛରେ ରହିଥିଲା ବୁଲୁ ଗୁରୁଜୀଙ୍କର ସୁଚିନ୍ତିତ ଯୋଜନା, ପ୍ରସ୍ତୁତି ଓ ପରିଚାଳନା । ସପ୍ତାହକ ଆଗରୁ ସେ ସବୁ ଜିନିଷ ଏକାଠି କରି ପିଲାଙ୍କୁ ପ୍ରସ୍ତୁତ କରାଇଥିଲେ ।

## ସୂର୍ଯ୍ୟ ପରାଗ ପରେ...

ଦିନ ସାଢେ ଦଶଟା ବେଳକୁ ପରାଗ ପର୍ବ ସରିଲା, ସ୍କୁଲରେ ପିଲାଏ ଖୁସିରେ କେତେ ଗୀତ ଗାଇ ନାଚି ଡେଉଁଥାନ୍ତି । ଏଥର ଗୁରୁଜୀ ସବୁ ଟିକିବିଜ୍ଞାନୀ ଅଭିଭାବକ ଓ ଆଗ୍ରହୀ ଲୋକଙ୍କୁ ନେଇ ଏକାଠି ବସିଲେ । ପ୍ରତିଦଳ ପିଲାମାନେ ଯାହା ଯାହା କରିଥିଲେ ଓ ଯାହା ଫଳ ପାଇଥିଲେ ତାଙ୍କୁ ଆଲୋଚନା କରି ସଜାଇ ଦିଆଗଲା । ଯେପରି ଅନ୍ୟମାନେ ବି ସେଗୁଡ଼ିକୁ ଦେଖିପାରିବେ । ପିଲାଏ ଲାଗିପଡି ସ୍କୁଲର ବିଭିନ୍ନ ଜାଗାରେ ନିଜର ପରୀକ୍ଷା ପ୍ରଣାଳୀ, ଚିତ୍ର ଓ ବିବରଣୀ ଲେଖି ଲଗାଇ ଦେଲେ । ସୁତୁଲି ବାନ୍ଧି ଏଗୁଡ଼ିକ ଧାଡି ଧାଡି କରି ଲଗାଇଥାନ୍ତି । ସବୁ କାମ ସାରି ୧୨ଟା ବେଳକୁ ସମସ୍ତେ ଖାଇବାକୁ ଗଲେ । ଠିକ୍ କରାଗଲା ଯେ ୨ଟା ବେଳେ ପ୍ରଦର୍ଶନୀ ଖୋଲା ହେବ । ଗାଁର ସମସ୍ତଙ୍କୁ ଡକାଯିବ ।

## ଏକ ଚମତ୍କାର ପ୍ରଦର୍ଶନୀ

ପିଲାଏ ଚଟାପଟ ଖାଇଦେଇ ଘର ଘର ବୁଲିଗଲେ । ପିଲାଙ୍କର ଗଡଜିଣିଲା ପରି ଉତ୍ସାହ ଦେଖି ସମସ୍ତଙ୍କର ଆଗ୍ରହ ବଢିଲା । ୨ଟା ବେଳକୁ

ଗାଁଟା ଯାକର ଲୋକ ସ୍କୁଲ ପଡିଆରେ ପହଞ୍ଚିଲେ । ଆଗରୁ ପହଞ୍ଚି ପିଲାମାନେ ନିଜ ନିଜ କାମ ପାଖରେ ଧାଡିରେ ଠିଆ ହୋଇଯାଇଥାନ୍ତି । ସ୍କୁଲ ବାରଣ୍ଡାରେ ଠିଆ ହୋଇ ଗୁରୁଜୀ ପ୍ରଥମେ ସମବେତ ଲୋକଙ୍କୁ ପରାଗ କ'ଣ ଓ କିପରି ହୁଏ ସଂକ୍ଷିପ୍ତରେ ବୁଝାଇଦେଲେ । ତା ପରେ କହିଲେ ସେ ଦିନ ସ୍କୁଲରେ କରାଯାଇଥିବା ଐତିହାସିକ କାର୍ଯ୍ୟକ୍ରମ ବିଷୟରେ । ଯେଉଁ ପିଲାମାନେ ଘରୁ ବାହାରି ପାରି ନ ଥିଲେ ସେମାନେ ସ୍ୱେଚ୍ଛାସେବୀ ହୋଇ ଲୋକଙ୍କୁ ଧାଡିରେ ଛାଡିଲେ । ପ୍ରତି ଦଳ ନିଜ ପ୍ରସ୍ତୁତି, ଅନୁଭୂତି କରିବା ସହିତ ନିଜ ଚିତ୍ର ଓ ଲେଖାକୁ ଦେଖାଉ ଥାନ୍ତି । ସେ ସମୟରେ ସେମାନେ ଯେଉଁ ଆନନ୍ଦ ଓ ଉତ୍ସାହରେ ବତାଉଥାନ୍ତି, ସେଥିରେ ଗାଁଲୋକ ଭିତରୁ କେତେ ଖୁସି ହୋଇ ଯାଉଥାନ୍ତି । ଏତେ ଶୃଙ୍ଖଳିତ ଭାବରେ ଏତେ ବଡ ପରାଗ ସ୍ୱାଗତକାରୀ ଅଭିଯାନଟିଏ କରାଇପାରିଥିବାରୁ ବୁଲୁ ଗୁରୁଜୀଙ୍କ ପାଖରେ ସମସ୍ତଙ୍କ ମୁଣ୍ଡ ନଇଁ ଯାଉଥାଏ ।

ଏସବୁ ପରେ ଆଭିଭାବକମାନେ ନିଜ ଅନୁଭୂତି କହିଲେ । ଲୀନା ଓ ମୁନାଙ୍କ ବାପା ମା' ବି କହିଲେ । ସେମାନେ ତାଙ୍କର ଘରୁ ସ୍କୁଲ ଯାଏଁ ରାଗଭରା ଚାଲି, ପୁଣି ସ୍କୁଲରେ ପହଞ୍ଚି ପରାଗ ଡର ଛାଡି ପରାଗ ପ୍ରେମରେ ପଡିଯିବାର ଚିକିନିଖି ବର୍ଣ୍ଣନା କଲେ । ଏହା ଏକ ମନଛୁଆଁ ଘଟଣା ବନିଗଲା । ଶୁଣିବା ଲୋକଙ୍କର ବି ଏହି ବିରଳ ଘଟଣାଟି ପାଇଁ ମନ ଭିତରେ କେତେ ଆଗ୍ରହ ଆସିଲା ।

## ଆଉ ବୁଢୀ ମା ?

ସେ ଦିନ ଲୀନା ଓ ମୁନା ବୁଢୀ ମା' ପାଖରେ ପହଞ୍ଚିବା ଆଗରୁ ବାପା ମା' ପହଞ୍ଚି ନିଜର ପୂରା ଅନୁଭୂତିକୁ ଶୁଣାଇ ସାରିଥାନ୍ତି । ବୁଢୀ ମା' ତ ରାଗରେ ତମ ତମ ହୋଇଥିଲା । କିନ୍ତୁ ପୁଅ ବୋହୁଙ୍କର ଏ ବଦଳା ଅନୁଭୂତି ଓ ଆଗ୍ରହ ଦେଖି ତାର ମନରେ ଅଲଗା ଭାବ ଆସିଲା । ପିଲା ଦି'ଟା ଭଲରେ ଫେରୁଛନ୍ତି ପୁଣି ଏକ ଐତିହାସିକ ଅନୁଭୂତି ନେଇ ଏହା ଶୁଣି ବୁଢୀମା ଆଶ୍ୱସ୍ତ ଓ ଖୁସି ହୋଇଯାଇଥାନ୍ତି । କିନ୍ତୁ ପିଲା ଦୁଇଟା ପହଞ୍ଚିଲା ପରେ ମଜାଟା ହେଲା ।

ଲୀନା, ମୁନା ଡରି ଡରି ବୁଢୀ ମା' ପାଖରେ ପହଞ୍ଚି ମା' କେତେ ରାଗିଛି

ଜାଣିବା ପାଇଁ ତାଙ୍କ ଆଖିଟାକୁ ଝଟକିନା ଗ୍ୱହିଁଦେଲେ । ତାଙ୍କୁ ଆହୁରି ଡର ମାଡିଲା । ବୁଢୀ ଦାନ୍ତ କଟମଟ କରି ଗ୍ୱହିଁଥାନ୍ତି । କିନ୍ତୁ ପରାଗର ଆକସ୍ମିକତା ଠାରୁ ଆହୁରି ଏକ ଆକସ୍ମିକ ଘଟଣା ସେତେବେଳେ ଘଟିଗଲା । ହଠାତ୍ ବୁଢୀ ମା' ତାର କୃତ୍ରିମ ରାଗର ଢାଙ୍କୁଣିଟି ମୁହଁରୁ ଖସାଇଦେଇ ଲାଜେଇଲା ମୁହଁରେ ଲୀନା ଓ ମୁନାକୁ କୁଣ୍ଢାଇ ନେଉ ନେଉ କହି ପକାଇଲେ " ତମ ଦି'ଟାକୁ ରାହୁ ବି ପାରିବନି । ଲୀନା ଓ ମୁନା ଆଗରୁ ତ ବୁଢୀ ମା ପାଖରେ ବହୁତ ଗେଲ ହୋଇଥିଲେ । କିନ୍ତୁ ଏଥରର କୃତ୍ରିମ ରାଗ ପରର ଗେଲଟି ବୋଧେ ସବୁଠୁ ମଧୁର ଓ ବିରଳ ଥିଲା ।

ଲୀନା ଆଉ ମୁନା ଏଥର ବୁଢୀ ମା'ଙ୍କୁ ଆଉ କି ଛାଡନ୍ତି । ତାଙ୍କ ଅଳିରେ ବାଧ୍ୟ ହୋଇ ବୁଢୀ ମା' ବାଡି ଧରି ସ୍କୁଲର ପରାଗ ପ୍ରଦର୍ଶନୀ ଦେଖିଲେ । ଶେଷରେ ବୁଲୁ ଗୁରୁଜୀଙ୍କୁ କହିଲେ, *" ଗୁରୁଜୀ । ଗ୍ରହଣକୁ ଡରୁ ଡରୁ ତ ମୋ ଜୀବନ ସରିଗଲା । କିନ୍ତୁ ମୋ ଲୀନା ଆଉ ମୁନା ତମ କଥାରେ ମଣିଷ ହୋଇ ଗଲେ ।"* ସେଦିନ ଯିଏ ପରାଗ ଦେଖିଥିଲେ ଆଉ କେତେ ରକମର ପରୀକ୍ଷା ନିରୀକ୍ଷା କରିଥିଲେ ସେମାନେ ଆହୁରି ଖୁସି ହୋଇ ଯାଇ କହିଲେ," ଆମେ ଭାଗ୍ୟବାନ" ।

ଯିଏ ଦେଖି ନ ଥିଲେ କିନ୍ତୁ ପ୍ରଦର୍ଶନୀ ଦେଖୁଥିଲେ ସେମାନେ ବି ପାଟି କରି କହିଲେ ,"ଆରେ ଆମେ ବି ତମ ଯୋଗୁଁ ଭାଗ୍ୟବାନ । ଆମେ ଘରୁ ସିନା ବାହାରି ପାରିଲୁନି । ଆମ ଆଖି ସିନା ବନ୍ଦ ହୋଇଥିଲା । କିନ୍ତୁ କାନ,ଆଖି ସବୁ କାମ କରୁଥିଲା । ତୁମର ଚିତ୍ର ଲେଖା ଦେଖି ତୁମଠୁ ଶୁଣିଲା ପରେ ଆମେ ବି ଅନେକାଂଶରେ ଏହାର ମଜା ପାଇପାରିଛୁ । ଆଗକୁ କେବେ ଏ ସୁଯୋଗ ହରାଇବାନି ।"ସେ ଦିନର ଏପରି ଖୁସିର ଉନ୍ମାଦନା ମଧ୍ୟରେ ସୂର୍ଯ୍ୟ ଦ୍ୱିତୀୟ ଥର ପାଇଁ ଲୁଚି ଗଲେ ।

ପ୍ରକୃତି ପ୍ରେମୀ ଓ ଜୀବନ ପ୍ରେମୀ ବୁଲୁ ଗୁରୁଜୀ ମନେ ମନେ ପ୍ରକୃତିର ଏ ବୈଚିତ୍ର୍ୟର ଗୁଣ ଗାଉ ଗାଉ ଆନନ୍ଦଭରା କ୍ଳାନ୍ତିରେ ସମସ୍ତେ ଯିବା ବାଟକୁ ଗ୍ୱହିଁ ରହିଥିଲେ । ଭାବୁଥିଲେ ଶିକ୍ଷକ ସମାଜର ଗୋଦରା ଅବସ୍ଥା ସମ୍ପର୍କରେ । କଣ୍ଟାଫୁଲ ଗାଁରେ ତାଙ୍କ ପରି ବୁଢାଟେ ଯଦି ଗାଁଟାରେ ଚହଳ ପକାଇ ଦେଇପାରିଲା (ସବୁ କଟକଣା ସତ୍ତ୍ୱେ), ତେବେ ଏହା ଯେ ସବୁ ଅଞ୍ଚଳରେ ସମ୍ଭବପର ହୋଇପାରିବ-ଏହି ବିଶ୍ୱାସରୁ ହିଁ ସେ ବେଶ ଆନନ୍ଦ ପାଉଥିଲେ ।

...... ଏହି ଅଭିଯାନଟି ପଛରେ ରହିଥିଲା ପ୍ରକୃତି ଓ ଜୀବନପ୍ରେମୀ ବୁଲୁ ଗୁରୁଜୀଙ୍କର କୌତୂହଳମନ ଓ ଆଗ୍ରହ । ବିଜ୍ଞାନ ଶିକ୍ଷାର ଅସଲ ଗ୍ୱବିକାଠି